ଶ୍ରୀ ୰ଉପେନ୍ଦ୍ର ଭଞ୍ଜଙ୍କ କୃତ

# ଭାବବତୀ



ପ୍ରକାଶିକା:-
ଓଡ଼ିଶା ଜଗନ୍ନାଥ କମ୍ପାନୀ·କଟକ-୨

ମୂଲ୍ୟ—ଏକଟଙ୍କା।

କବିସମ୍ରାଟ ୰ଉପେନ୍ଦ୍ର ଭଞ୍ଜଙ୍କ

# ଭାବବତୀ

( ସୁବୋଧିନୀ ଟୀକା ସହ )

---

ପ୍ରକାଶକ—ଶ୍ରୀ ଜଗନ୍ନାଥ ସିଂହ

---

ସମ୍ପାଦକ ଓ ଟୀକାକାର
ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ, ଏମ୍. ଏ

ନୂତନ ସଂସ୍କରଣ
୧୯୬୯

ପ୍ରାପ୍ତିସ୍ଥାନ
ଓଡ଼ିଶା ଜଗନ୍ନାଥ କମ୍ପାନୀ
ଶ୍ରୀ ଜଗନ୍ନାଥ ସିଂହ
ବାଲୁବଜାର ପୋ: ଚାନ୍ଦନୀଚୌକ
କଟକ

ମୂଲ୍ୟ-ଏକଟଙ୍କା ମାତ୍ର

# ମୁଖବନ୍ଧ

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓଡ଼ିଶାର ଜାତୀୟ କବି । ଓଡ଼ିଆ ଭାଷା ଓ ସାହିତ୍ୟର ଯେତେବେଳେ ଦାରୁଣ ଦୁର୍ବିପାକ, ଓଡ଼ିଶା ଯେତେବେଳେ ଖଣ୍ଡିତ ଭୂଖଣ୍ଡ; ସେତେବେଳେ ଓଡ଼ିଆଭାଷାର ରକ୍ଷାପାଇଁ, ତତ୍‌କାଳୀନ ମାନ୍ଦ୍ରାଜରାଜ୍ୟାନ୍ତର୍ବର୍ତ୍ତୀ ଗଞ୍ଜାମଜିଲ୍ଲାରେ ରାଜ-ସିଂହାସନ ପ୍ରତି ବୀତସ୍ପୃହ ହୋଇ ସାରସ୍ୱତସାଧନା-ବ୍ରତୀ ହୋଇଥିଲେ ଭଞ୍ଜରାଜକୁମାର ଉପେନ୍ଦ୍ର ଭଞ୍ଜ । ତାଙ୍କର ସୀମିତ ଜୀବନକାଳ (ଖ୍ରୀ: ୧୬୮୦-୧୭୫୦) ମଧ୍ୟରେ ଓଡ଼ିଆ କାବ୍ୟସାହିତ୍ୟକୁ ସେ ଯେଉଁପରି ସମୃଦ୍ଧ କରିଗଲେ, ତାହା ଭାବିଲେ ହୃଦୟ ବିସ୍ମୟାଭିଭୂତ ହୁଏ । ଜୀବନର ପୂର୍ଣ୍ଣ ତାରୁଣ୍ୟରେ ରସାଳ ହୃଦୟର କମନୀୟ ଭାବରାଜିକୁ ରୂପଦେଇ ସେ ଯେଉଁ କମ୍ରକଳାନ୍ୱିତ କାବ୍ୟରାଜି ପ୍ରଣୟନ କରିଗଲେ ତାହା ଆଜି ମଧ୍ୟ ତରୁଣକୁଳକୁ ସ୍ପନ୍ଦିତ ଓ ଆନନ୍ଦିତ କରୁଛି । ତେଣୁ ଆଜି ଭଞ୍ଜ ସାହିତ୍ୟ ସମାରୋହ ଓଡ଼ିଶା ଓ ଓଡ଼ିଶା ବାହାରେ ଅତି ମାତ୍ରାରେ ଅନୁଷ୍ଠିତ ହେଉଛି ଏବଂ ଓଡ଼ିଆଜାତି ଭଞ୍ଜକବିଙ୍କୁ ଏ ଜାତିର କଳାକମ୍ର ସାରସ୍ୱତ ରାଜ୍ୟର ସମ୍ରାଟରୂପେ ମାନିନେଇଛି । ଭଞ୍ଜୀୟ କାବ୍ୟ ଏତେ ଆଦର ଲାଭ କରୁଛି ଯେ ପରବର୍ତ୍ତୀକାଳରେ ବହୁ ରଚନା ଭଞ୍ଜ ନାମରେ ନାମିତ ହୋଇ ପ୍ରକାଶିତ ହୋଇଛି । ସେ ସବୁର ଯଥାର୍ଥ ଗବେଷଣା ବର୍ତ୍ତମାନ ପର୍ଯ୍ୟନ୍ତ ଅପେକ୍ଷିତ । ଏହି ଦୃଷ୍ଟିରୁ ଭାବବତୀର ଭଞ୍ଜୀୟ ରଚନାତ୍ୱ ନେଇ ମଧ୍ୟ ଆଲୋଚନା ଆବଶ୍ୟକ ହୋଇଥାଏ ।

ଭଞ୍ଜ ରାଜବଂଶରେ 'ମଙ୍ଗରାଜ' ଉପାଧି ପ୍ରଚଳିତ ଥିବା ଐତିହାସିକ ପ୍ରମାଣ ପ୍ରତିଷ୍ଠିତ ନୁହେ । ସେହି ଦୃଷ୍ଟିରୁ 'ଯମକ ରାଜ ଚଉତିଶା' ଓ ଆଉ କେତେକ କବିତାର ଭଞ୍ଜୀୟ କୃତିତ୍ୱ ଉପରେ ସନ୍ଦେହ ଆରୋପିତ ହୁଏ । 'ମଙ୍ଗରାଜ' ଶବ୍ଦ ଅର୍ଥ ଦୃଷ୍ଟିରୁ ( ମଙ୍ଗ—ପ୍ରାନ୍ତ ତାହାର ରାଜା ) କୌଣସି ଏକ ପ୍ରାନ୍ତର ବା ମଣ୍ଡଳର ରାଜା ବୋଲି, ଯଦି ଉପେନ୍ଦ୍ର ତାଙ୍କର ବାଲ୍ୟକାଳର ଅପରିଚକ୍ୱ ମନରେ ସ୍ୱଭାବସୁଲଭ ରାଜସିଂହାସନର ଲାଳସା ପରିହାର କରି ନପାରି ବ୍ୟବହାର କରିଥିବେ; ତେବେ ହୁଏତ କେତେକ କାବ୍ୟ ଭଞ୍ଜୀୟ ରଚନାଭାବରେ ଗ୍ରହଣ କରାଯାଇ ପାରେ । କିନ୍ତୁ ତାଙ୍କର କବିତ୍ୱର ପ୍ରକୃତ ପରିଚୟସୂଚକ ଗ୍ରନ୍ଥରାଜି ( ଯଥା :— ବୈଦେହୀଶ ବିଳାସ, ଲାବଣ୍ୟବତୀ, ସୁଭଦ୍ରା ପରିଣୟ, କୋଟିବ୍ରହ୍ମାଣ୍ଡ-ସୁନ୍ଦରୀ, ପ୍ରେମ ସୁଧାନିଧି ଇତ୍ୟାଦି ) ରେ ମଙ୍ଗରାଜ ପଦବୀ ଦେଖିବାକୁ ମିଳେ ନାହିଁ । ହୁଏତ ଏହି ରଚନାବେଳେ ଉପେନ୍ଦ୍ର ରାଜସିଂହାସନ ପ୍ରତି ସମ୍ପୂର୍ଣ୍ଣ ବୀତଶ୍ରଦ୍ଧ ହୋଇ, ସାରସ୍ୱତ ରାଜ୍ୟର ସମ୍ରାଟ୍ ପଦରେ ଅଧିଷ୍ଠିତ ହେଲେଣି । ଏହି ଦୃଷ୍ଟିରୁ ବିଚାର କଲେ, 'ଭାବବତୀ' ଉପେନ୍ଦ୍ରଙ୍କ ଏକ ପ୍ରାଥମିକ ରଚନା । ଏହାର ଷଷ୍ଠଛାନ୍ଦ ଶେଷରେ 'ଉପଇନ୍ଦ୍ର ମଙ୍ଗରାଜ ଏ ଭଣି'ରୁ ଏହା ସ୍ପଷ୍ଟ ପ୍ରତୀତ ହୁଏ । ଭାଷା, ଭାବ ଓ ଶୈଳୀ ଦୃଷ୍ଟିରୁ ମଧ୍ୟ ଏହା ଭଞ୍ଜୀୟ ପ୍ରତିଭାର ପ୍ରଥମ କାବ୍ୟକୃତି କହିଲେ ଅତ୍ୟୁକ୍ତି ହେବନାହିଁ । ରସିକାବ୍ୟ ବନ୍ଧୋଦୟରେ ସ୍ୱୟଂ କବି ସମ୍ରାଟ୍ "ଭାବବତୀ ମୁକ୍ତାବଳି ପ୍ରମାଣ, ବିରଜାଲୀଳା ଯେ ଛାନ୍ଦଭୂଷଣ" ( ୧-୧୫ ) କହି ତାଙ୍କର କୃତି ଭାବବତୀକୁ ସ୍ୱୀକୃତି ଦେଇ ଯାଇଛନ୍ତି ।

ଲାବବତୀର ଭାଷା ଅତି ସରଳ । ଭାବ ଅପରିପକ୍ୱ । କିନ୍ତୁ ଏହି ଅପରିପକ୍ୱ ଭାବ, ସରଳଭାଷା ହିଁ ପରବର୍ତ୍ତୀ କାବ୍ୟମାନଙ୍କରେ ପ୍ରୌଢ଼ତା ପ୍ରାପ୍ତହୋଇ ଉଞ୍ଜୀପ୍ସୁ ପ୍ରତିଭାର ଋଦ୍ଧିମନ୍ତ ବିଭବ ପ୍ରଦର୍ଶନ କରିଛି । ସେହି ଏକ ନାୟକ ନାୟିକାଙ୍କ କଥାବସ୍ତୁ ଯାହାର ଭାବବୀଜ ଲାବବତୀରେ ନିହିତ, ତାହା ପରେ ନିସର୍ଗମଞ୍ଜୁଳ ଲାବଣ୍ୟବତୀରେ ରସୋଚ୍ଛଳ ପୂର୍ଣ୍ଣତାରୁଣ୍ୟ ପ୍ରାପ୍ତ ହୋଇ ପରେ କୋଟିବ୍ରହ୍ମାଣ୍ଡସୁନ୍ଦରୀରେ ପୌଢ଼ିତ୍ୱ ଲାଭ କରିଛି ।

ଯାହାର ଯୁବା ବୟସେ ମନର ଯୁବତୀ ପାଶେ
ନାହିଁ ତାହା ଜୀଇବାର କି ପ୍ରୟୋଜନ,
ମାରିଦଣ୍ଡ ପରି ହୋଇ ତ୍ରିଭୁବନେ କଷ୍ଟ ନାହିଁ
ତାପ ନାହିଁ ଏକାହୋଇ ନେବାରୁ ଦିନ,
କର୍ଣ୍ଣ କରି ତାକୁ ନ ଗଣି
ଯେ ତରୁଣୀ ରସଗର୍ଭ ବାଣୀ ନ ଶୁଣି ।

( ଲାବବତୀ ୩।୫ )

ଏଥିରୁ ଉପେନ୍ଦ୍ରଙ୍କ ତରୁଣ ଜୀବନର ଆଲୋଳମନ କିପରି ଏକ ପରିଣ ସାଥୀ ଖୋଜି ବୁଲୁଥିଲା, ତାହା ସ୍ପଷ୍ଟ ହୁଏ । ତାହାକୁ ଅଧିକ ସ୍ପଷ୍ଟତର କରି କବିବର କହିଛନ୍ତି —

ମୋହର ଏ ବୟସରେ ଯୁବତୀ ନାହିଁ ପାଶରେ
ବିଅର୍ଥ ଏ ସମ୍ପଦରୁ ଭିଳିଲା ମନ,

( ଲାବବତୀ ୩।୯ )

ଭଞ୍ଜୀୟ କାବ୍ୟର ପ୍ରକୃତିର ବିକାଶ ବିଷୟ ଆଲୋଚନା କଲାବେଳେ ଭାବବତୀ ଏକ କ୍ଷୁଦ୍ରତମ କାବ୍ୟ ହେଲେ ହେଁ ପ୍ରଥମ ଭଞ୍ଜକାବ୍ୟ ଭାବରେ ପ୍ରଥମେ ସମାଲୋଚକମାନଙ୍କୁ ଆକର୍ଷିତ କରିବ । ଏହି କ୍ଷୁଦ୍ର କାବ୍ୟଟିର ମୁଖଶାଳା ଦେଉଳଠାରୁ ବଡ଼ ହୋଇଯିବା ଆଶଙ୍କାରେ ଏହା ବିଷୟରେ ଅଧିକ ଆଲୋଚନା କରିବାରୁ ନିବୃତ୍ତ ହେଲି ।

ଦୁଇଖଣ୍ଡ ତାଳପତ୍ର ପୋଥି ଓ ଖଣ୍ଡିଏ ଅତି ପୁରୁଣା ଖଣ୍ଡିତ ଜୀର୍ଣ୍ଣ ବହିର ଆଶ୍ରୟରେ ଏହାର ସମ୍ପାଦନା କଲି । କାବ୍ୟଟିର ଭାବ, ଭାଷା ସରଳ ସୁବୋଧ ହେତୁ, ଏହାର ବିସ୍ତୃତ ଟୀକା କରିବା ଅନାବଶ୍ୟକ ମନେକରି ସାମାନ୍ୟ ପଦାର୍ଥ ଟିପ୍ପଣୀରେ ସଂଯୋଜିତ କରିଛି । ଯେଉଁମାନେ ଭଞ୍ଜସାହିତ୍ୟର ପ୍ରଚାର ଓ ପ୍ରସାରପାଇଁ ଅନବରତ ଅଧ୍ୟବସାୟ କରୁଛନ୍ତି, ସେମାନଙ୍କ ପ୍ରତି ଶ୍ରଦ୍ଧା ଜ୍ଞାପନ କରି, ଏହି ଭଞ୍ଜୀୟକୃତିକୁ ସେମାନଙ୍କ ହାତରେ ହିଁ ଅର୍ପଣ କରୁଛି । ଇତି ।

ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ
ସମ୍ପାଦକ, ସାଂସ୍କୃତିକ ବ୍ୟାପାର ବିଭାଗ
ଓଡ଼ିଶା, ଭୁବନେଶ୍ୱର-୭
ତା ୫ । ୭ । ୭୯ ରିଖ

# ଭାବବତୀ



## ପ୍ରଥମ ଛାନ୍ଦ

ରାଗ—ନଳିନୀଗୌଡ଼ା

ଜୟ ଜୟ ଶୁଭରତ ଭରତ ବନ୍ଦିତ ।
ଜୟ ଜୟ ସଲକ୍ଷ୍ମଣ ଲକ୍ଷ୍ମଣ ମୋଦିତ ହେ ।୧।

---

କାବ୍ୟର ପ୍ରାରମ୍ଭରେ ମଙ୍ଗଳାଚରଣ ଦ୍ୱାରା ବିଘ୍ନ ବିନାଶନ ହୋଇଥାଏ ବୋଲି ପାରମ୍ପରିକ ରୀତିରେ ରାମତାରକ ମନ୍ତ୍ରସିଦ୍ଧ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ପ୍ରଥମ ପାଞ୍ଚ ପଦରେ ଶ୍ରୀରାମଚନ୍ଦ୍ରଙ୍କ ସ୍ତବ କରିଛନ୍ତି । ଏଥିରେ ପ୍ରଯୁକ୍ତ ଜୟ ଶବ୍ଦ ନମସ୍କାରମୂଳକ । ରୂପ-ଗୋସ୍ୱାମୀଙ୍କ ଦ୍ୱାରା ଉଜ୍ଜ୍ୱଳ-ନୀଳମଣିର ମଙ୍ଗଳାଚରଣରେ ପ୍ରଯୁକ୍ତ 'ଜୟତି' ଶବ୍ଦର ବ୍ୟାଖ୍ୟାରେ ମଧ୍ୟ ବିଶ୍ୱନାଥ ଚକ୍ରବର୍ତ୍ତୀ ଲେଖିଛନ୍ତି— '"ଜୟତ୍ୟର୍ଥେନ ତଂ ପ୍ରତି ପ୍ରଣତୋଽସ୍ମୀତି ନମସ୍କାରୋଽପି ବ୍ୟଜ୍ୟତେ" (ଆନନ୍ଦଚନ୍ଦ୍ରିକା ଟୀକା) ।

୧ । ଶୁଭରତ—ଶୁଭକର୍ମରେ ରତ । ସଲକ୍ଷ୍ମଣ—ଶୁଭଲକ୍ଷଣ ଯୁକ୍ତ ବା ସୌଭାଗ୍ୟଶାଳୀ ବା ଲକ୍ଷ୍ମଣଙ୍କ ସହ ସର୍ବଦା ଯେ ବର୍ତ୍ତମାନ ।

ହେ ରାମଚନ୍ଦ୍ର ! ତୁମେ ସମସ୍ତ ଶୁଭକର୍ମରେ ସର୍ବଦା ଲିପ୍ତ ଥାଅ, ତୁମେ ଭରତଙ୍କ ଦ୍ୱାରା ପୂଜାପାଅ । ହେ ସମସ୍ତ ଶୁଭଲକ୍ଷଣାନ୍ୱିତ ରାମଚନ୍ଦ୍ର ତୁମେ ଲକ୍ଷ୍ମଣଙ୍କ ( ସେବା ) ଦ୍ୱାରା ସର୍ବଦା ପ୍ରୀତ । ତୁମକୁ ମୁଁ ନମସ୍କାର କରୁଅଛି ।

ଜୟ ଜୟ ସୀତା ଶୀ(ସି)ତାଂଶୁଲପନା ପ୍ରିୟ ।
ଜୟ ଜୟ ଶତ୍ରୁଘ୍ନ ଶତ୍ରୁଘ୍ନ ସୁଖୋଦୟ ହେ ।୨।
ଜୟ ଜୟ ଜନକ ଜନକ-ତୋଷକର ।
ଜୟ ଜୟ ସୁଗ୍ରୀବ ସୁଗ୍ରୀବ ସୁଖକର ହେ ।୩।
ଜୟ ଜୟ ସଦାଶିବ ସଦାଶିବ ପୂଜ୍ୟ ।
ଜୟ ଭବ ତରଣୀ ତରଣିବଂଶ ରାଜ ହେ ।୪।

---

୨ । ଯେଉଁ ରାମଚନ୍ଦ୍ର ଚନ୍ଦ୍ରବଦନା ସୀତାଙ୍କର ପ୍ରିୟ, ସ୍ୱୟଂ ଶତ୍ରୁମାନଙ୍କର ନିହନ୍ତା ଏବଂ କନିଷ୍ଠ ଶତ୍ରୁଘ୍ନର ଯେ ସୁଖଦାତା, ତାଙ୍କୁ ମୁଁ ପ୍ରଣାମ କରୁଅଛି ।

୩ । ଜନକ—ପିତା, "ତାତସ୍ତୁ ଜନକଃ ପିତା ଇତ୍ୟମରଃ", ଜନକମହର୍ଷି । ସୁଗ୍ରୀବ—ଉତ୍ତମଗ୍ରୀବା ଯାହାଙ୍କର, ବାନର ରାଜା ଓ ରାମଚନ୍ଦ୍ରଙ୍କ ମିତ୍ର ।

ହେ ସଂସାରର ଜନକ ରାମଚନ୍ଦ୍ର, ତୁମେ ଜନକ ମହର୍ଷିଙ୍କ (ଶିବଧନୁ ଭଗ୍ନକରି ସୀତାଙ୍କୁ ବିବାହ କରିଥିବାରୁ) ଆନନ୍ଦଦାତା ଅଟ । ହେ ଉତ୍ତମ ଗ୍ରୀବାଶାଳୀ ରାମଚନ୍ଦ୍ର, ତୁମେ ମିତ୍ର ସୁଗ୍ରୀବର ସୁଖଦାତା ଅଟ । ତୁମକୁ ମୁଁ ନମସ୍କାର କରୁଅଛି ।

୪ । ତରଣୀ—ନୌକା, ତରଣି—ସୂର୍ଯ୍ୟ "ଦ୍ୟୁମଣିସ୍ତରଣିର୍ମିତ୍ରଃ ଇତ୍ୟମରଃ" ।

ଯେଉଁ ରାମଚନ୍ଦ୍ର ସର୍ବଦା ମଙ୍ଗଳମୟ ଏବଂ ମହାଦେବ ଶିବଙ୍କ ଦ୍ୱାରା ପୂଜ୍ୟ, ଯେ ସଂସାର ସାଗର ପାରିହେବାରେ ନୌକା ସଦୃଶ, ସେହି ସୂର୍ଯ୍ୟବଂଶୀ ରାଜାଙ୍କର ଜୟ ହେଉ ବା ତାଙ୍କୁ ମୁଁ ପ୍ରଣାମ କରୁଅଛି ।

ଜୟ ଜୟ ମରୁତ ମରୁତ ସୁତ ପକ୍ଷ ।
ଜୟ ନାଶ ବିଭୀଷଣ ବିଭୀଷଣ ରକ୍ଷ ହେ ।୫।
ସେ ପ୍ରଭୁ ପଦାରବିନ୍ଦ ଚିତ୍ତେ ଧ୍ୟାନ କରି ।
ଲାବଣ୍ୟବତୀ ଚରିତ ମୁଁ କହଇ ବିସ୍ତାରି ହେ ।୬।
କେରଳ ଦେଶେ କୁସୁମଶର ନାମେ ରାଜା ।
ଏ ମହୀମଣ୍ଡଳେ ଯାର ଭୁଜ ପାଇ ପୂଜା ହେ ।୭।
ସୁଷମା ସୁଷମା ପଦ୍ମା ପଦ୍ମାବତୀ ରାଣୀ ।
ଲାବଣ୍ୟବତୀ ବୋଲି ତାର ଏକଇ ଦୁଲଣୀ ହେ ।୮।

---

୫ । ମରୁତ—ପବନ, ଦେବତା "ମରୁତୌ ପବନାମରୌ ଇତ୍ୟମରଃ" । ବିଭୀଷଣ—ଅତି ଭୟଙ୍କର, ରାବଣର ସାନଭାଇ ।

ହେ ଦେବତା ରାମଚନ୍ଦ୍ର, ତୁମେ ପବନସୁତ ହନୁମାନଙ୍କ ସପକ୍ଷ ଅଟ । ତୁମେ ସଂହାରକାଳରେ ଅତି ଭୟଙ୍କର ରୂପ ଧାରଣ କରିଥାଅ । ହେ ରାମଚନ୍ଦ୍ର ! ତୁମେ ବିଭୀଷଣର ରକ୍ଷାକର୍ତ୍ତା ଅଟ । ତୁମକୁ ମୁଁ ନମସ୍କାର କରୁଅଛି ।

୬ । ସେହି ପ୍ରଭୁ ରାମଚନ୍ଦ୍ରଙ୍କ ପାଦପଦ୍ମକୁ ଚିତ୍ତରେ ଧ୍ୟାନକରି ମୁଁ ଉପେନ୍ଦ୍ର ଭଞ୍ଜ କବି ଲାବଣ୍ୟବତୀ କାବ୍ୟ ବିଷୟକୁ ପ୍ରାଞ୍ଜଳଭାବରେ ବର୍ଣ୍ଣନା କରୁଅଛି ।

୭ । ଭୁଜ ପାଇ ପୂଜା—ଅତ୍ୟନ୍ତ ପରାକ୍ରମୀ ।

୮ । ସୁଷମା—ପରମାଶୋଭା, ସୁଷମା ପଦ୍ମା—ଲକ୍ଷ୍ମୀଙ୍କର ଶୋଭା ।

କୁସୁମଶର ରାଜାଙ୍କର ରାଣୀ ପଦ୍ମାବତୀ । ତାଙ୍କର ସୌନ୍ଦର୍ଯ୍ୟ ଲକ୍ଷ୍ମୀଙ୍କର ସୌନ୍ଦର୍ଯ୍ୟ ପରି । ପଦ୍ମାବତୀ ରାଣୀଙ୍କର ଲାବଣ୍ୟବତୀ ନାମରେ ଏକମାତ୍ର ଝିଅ ଥିଲା ।

ତାହାର ଜନ୍ମ ଜାଣିଣ ଭୟରୁ ପାଷଣ୍ଡ ।
ପଶୁପତି ଅଙ୍ଗଦେଶେ ଯାଇ ପଶିଛନ୍ତି ହେ ।୯।
ଯେହୁ ମନୋରମା ରମା କରି ଏ ବସ୍ତୁର ।
ହରି କୋଳେ ଲୁଚିଛନ୍ତି ଲଭି ମହା ଦର ହେ ।୧୦।
ଅପସରା ଅପସରି ଗଲେ ଅବନୀରୁ ।
ନିର୍ନିମିଷ ହୋଇଲେ କି ସୁନ୍ଦର ଶଙ୍କାରୁ ହେ ।୧୧।
ଶଚୀ ସନ୍ଧ୍ୟା ତ୍ରାସି ଗୁପ୍ତା ଅଶ୍ୱୀ ରୂପ ଧରି ।
ଟଙ୍ଗାଢ ତରଳ ଚରଁ ହୋଇଲେକ ବାରି ହେ ।୧୨।
ବାଲ୍ୟ ଅବସ୍ଥାରେ ମହାଋଷିମାନେ ଦେଖି ।
ଆଖିରେ ତାହାର ଶୋଭା ଲେଖା ନେଲେ ଲେଖି ଯେ ।୧୩।
ଯୋଗୀ ଦେଖି ବିସ୍ମରିଲେ ଆତ୍ମ ଇନ୍ଦ୍ରୀ ଏହି ।
ଏଥର ମନମଥର ଶରେ ହେବା ଦହି ଯେ ।୧୪।
କାମ କାମନାହିଁ ଏହି ହେଉ ଯୁବାକାଳ ।
ମହାଜିତ ପଦ କେହି ନେବ କାଳ ଆଳ ହେ ।୧୫।
ହିହି ଯଦି ଆସିଣ ତକ୍ଷକ ହୋଇ ରହି ।
ବିସ୍ମରଇ ଏହା ପରି ପାଇବ କି ବହି ଯେ ।୧୬।

---

୯ । ପଶୁପତି—ଶିବ "ପଶୁପତିଃ ଶିବଃ ଶୂଳୀ ଇତ୍ୟମରଃ" ।
୧୦ । ରମା—ଲକ୍ଷ୍ମୀ "କ୍ଷୀରୋଦତନୟା ରମା ଇତ୍ୟମରଃ" ।
ଦର—ଭୟ ।
୧୧ । ଅପସରା—ସ୍ୱର୍ଗବେଶ୍ୟା, ଅପସରି—ପଳାଇଯିବା । ଅବନୀ—ପୃଥିବୀ, ନିର୍ନିମିଷ—ପଲକହୀନ ।
୧୨ । ଅଶ୍ୱୀ—ମାଈଘୋଡ଼ା (ଅଶ୍ୱା—ପାଠାନ୍ତର)
୧୪ । ଇନ୍ଦ୍ରୀ—ଇନ୍ଦ୍ରର ଅର୍ଥ ଐଶ୍ୱର୍ଯ୍ୟଶାଳୀ, ତେଣୁ ଓଡ଼ିଆରେ ତାର ସ୍ତ୍ରୀଲିଙ୍ଗରେ ଐଶ୍ୱର୍ଯ୍ୟଶାଳିନୀ ଅର୍ଥରେ ଇନ୍ଦ୍ରୀ ହୋଇଛି ।

ଅନେକ କୃତ୍ରିମ ପୁଷ୍ପୀ ତା ସଚେ ନିର୍ମାଣି ।
ବୁଝିବାକୁ କେମା ଖେଳବାକୁ ବାଏ ପୁଣି ଯେ ।୧୭।
ଏମନ୍ତେ କେତେଦନେ ପ୍ରବେଶ ଯଉବନ ।
ବସନେ ପ୍ରକାଶ ହୋଇ ବଶିଲକ ସ୍ତନ ଯେ ।୧୮।
ମଦନଭୂପତ୍ତି ବଗବଳେ ମନେ କରି ।
ସ୍ୱରୁତର ସାଚପୁର ଅଛି କ ଇଶ୍ୱର ଯେ ।୧୯।
ମଦହାସ ବନ୍ଧୁଷ୍ଟ ଆସି ବାସ କଲେ ।
ଚମ୍ପା ଶମ୍ପା ସୁବର୍ଣ୍ଣ ସୁବର୍ଣ୍ଣ ଦେଇଗଲେ ଯେ ।୨୦।
ଶ୍ରୁହାଣୀରେ ଚଞ୍ଚଳତା ଗଞରେ ମନ୍ଥର ।
ମଧ୍ୟଦେଶରେ କୃଶତା ବକ୍ଷରେ ପୀବର ଯେ ।୨୧।
ବଶୀକରଣ ପ୍ରମୃନ ଜଚ୍ଛାଠ ଦର୍ଶନେ ।
ସ୍ମାନ କଲେ ଆସିଣ ତ୍ରିଭୁବନ ମୋହନେ ହେ ।୨୨।
କନ୍ଦର୍ପ ଗ୍ୱବେ ରଚିଲ ଅଧର ପିଚକା ।
ଯୁବଣ୍ଟ ପଦକୁ ତର୍ହିଁ ପାଇଲ ନାୟିକା ଯେ ।୨୩।
ସେହ୍ୱଦନୁ ଚିନ୍ତା ଜାତ ମହୀପତି ଚତ୍ତେ ।
ନିଜ ଦୁହିତା ବବାହ ନବାହ ନିମନ୍ତେ ଯେ ।୨୪।
ଏଥୁ ଆନ ଚରିତ ଶୁଣ ହେ ସାଧୁନର ।
* ଚୋଳ ଦେଶ ମହୀପତି ନାମ ମଧୁକର ଯେ ।୨୫।

---

୧୯ । ମଦନ ଭୂପତି—କନ୍ଦର୍ପ ରାଜା, ସାଚ—ବନ୍ଧୁତା "ତିର୍ଯ୍ୟଗର୍ଥେ ସାଚ ତିରଃ ଇତ୍ୟମରଃ" ।

୨୦ । ଶମ୍ପା—ବିଜୁଳି, ସୁବର୍ଣ୍ଣ—ସୁନା, ଉତ୍ତମବର୍ଣ୍ଣ ।

---

୨୫ । * (ଟିପ୍‌ପଣୀ) ଚୋଳ ଦେଶ କାବେରୀତଟବର୍ତ୍ତୀ, ମହୀଶୂରର ଦକ୍ଷିଣ ସାଗରାନ୍ତବର୍ତ୍ତୀ ଭୂଖଣ୍ଡ । ଏହା ପରେ କର୍ଣ୍ଣାଟକ ନାମରେ କଥିତ ହେଲା ।

ତାହା ପ୍ରିୟବନ୍ଧ ଚନ୍ଦ୍ରାବନ୍ଧ ନାମେ ବାଳୀ ।
ତାହା ଗର୍ଭୋଦୟ ପୁତ୍ର ଅତି ଗୁଣଶାଳୀ ଯେ ।୨୬।
ଯାଚକ ଯାଚକ ତୋଷେ ଯା ଧନ କବନ୍ଧ ।
ରଣେ ପ୍ରକଟ କରଇ ଅନେକ କବନ୍ଧ ଯେ ।୨୭।
ରୂପ ଦେଖି ଅରୂପ ଯାହାର ଫୁଲରୂପ ।
ଆଜ କସ ବର୍ଣ୍ଣିବାକି ତା ଶୋଭା କଳାପ ଯେ । ।୨୮।
କନ୍ୟା ସମ ଖୋଜିବା ନିମନ୍ତେ ଦୂତମାନେ ।
ସମପଟ ଘେନଣ ବୁଲନ୍ତି ସ୍ଥାନେ ସ୍ଥାନେ ଯେ ।୨୯।
କେରଳ ଦେଶେ ପ୍ରବେଶ ହେବା ଦୂତେ ଯାଇଁ ।
ମାଳମ୍ମ ମଧ୍ୟରେ ଚର୍ଚ୍ଚି ସେ ରାଜକ ଇଚ୍ଛା ଯେ ।୩୦।
ପ୍ରଭାତୁଁ ପଟ୍ଟ ଗୋଟିଏ ଫୁଲମାଳା ସଙ୍ଗେ ।
ଘେନ ମାଳମ୍ମ ଚଳିଲା ହେମାପୁର ରଙ୍ଗେ ଯେ ।୩୧।
ଏକପଟ୍ଟ ସଚିବକୁ ଦୂତେ ଦେଖାଇଲେ ।
ହେମା ସମ ବର ହେଲା ମନ୍ତ୍ରୀ ବିଚାରିଲେ ହେ ।୩୨।
ରାଜାଙ୍କୁ ନେଇଣ କରାଇଲେ ଦରଶନ ।
ପଟ୍ଟ ଦେଖି ନୃପତିର ହରଷିତ ମନ ହେ ।୩୩।
ଦୂତ ବରଗିଲେ କେରଳପତିର ଗୃହକୁ ।
ପୁତ୍ରୀ ବିଭା କରାଇବା ନିମନ୍ତେ ପୁତ୍ରକୁ ହେ ।୩୪।
ରାମ ଧ୍ୟାୟି ଉପଇନ୍ଦ୍ର ଭଞ୍ଜ କହେ ରସ ।
ପଞ୍ଚବିଂଶ ପଦେ ଏହୁ ଛାନ୍ଦ ହେଲା ଶେଷ ହେ ।୩୫।

---

୨୭ । କବନ୍ଧ—ଜଳ, ମୁଣ୍ଡହୀନ ଗଣ୍ଡି ।
୨୮ । ଫୁଲରୂପ—କନ୍ଦର୍ପ, କଳାପ—ସମୂହ ।
୨୯ । ସମପଟ—ସମାନ ହୋଇଥିବା (ଅବିକଳ) ଚିତ୍ରପଟ ।

# ଦ୍ୱିତୀୟ ଛାନ୍ଦ

ରାଗ—ଛଞ୍ଜମବରାଡ଼ୀ, କଳସା ବାଣୀ ।

ଏଥୁ ଅନ୍ତେ ସାଧୁଜନେ ଶୁଣ ଦିବ୍ୟରସ
ଅନ୍ତଃପୁରେ ମାଳବାଳୀ ହୋଇଲା ପ୍ରବେଶ ଯେ ।
ପୁଷ୍ପଦେଲା ନୃପତନନ୍ଦନା ସଖୀ କରେ
ଏକସଖୀ ପୃଚ୍ଛା କରୁଅଛି ଚତୁରରେ ଯେ ।୧।
କଷ୍ଟେ କି ନ୍ୟସ୍ତ କରିଛ ବସନ ଘୋଡ଼ାଇ
ଏମନ୍ତ ହେନ ତା ପଛ ସେନଲେ ଛଡ଼ାଇ ଯେ ।
ଫେଡ଼ି ଦେଖିଲେ ମଦନ-ନନ୍ଦନ ସୁନ୍ଦର
ଅନିମେଷ ହୋଇଲା ନୟନ ତାହାଙ୍କର ଯେ ।୨।
ବିସ୍ମରିଲେ ଶୁଭମୁଖ ଭଲ ନିର୍ମାଣିଲା
ଆମ୍ଭ ସଖୀ ପାଇଁ ପଛ ଏ ପୁରେ ଆଣିଲା ଯେ ।
ଭାଳୁଥାଇ ଏହାସମ ପୁରୁଷ କି ଥିବ
କରିଥିଲା ଯେଣୁକରି ଏ ରୂପ ଦଇବ ଯେ ।୩।
ନ ଜାଣିଲା ପରା ହୋଇ ରମଣୀ-ରତନ
ସନ୍ନିକଟ ହୋଇ ବୋଲୁଅଛି ଏ ବଚନ ଯେ ।
ଏଡ଼େ ଶ୍ରଦ୍ଧାଯୁକ୍ତ ହୋଇ କିସ ଦେଖୁଅଛ
ମୋତେ ଦେଖିବାରେ ତାହା କରାଅ ପ୍ରତ୍ୟକ୍ଷ ଯେ ।୪।

ସଜନୀ ବୋଇଲେ ଆମ୍ଭେ ପଟ୍ଟ ଦେଖାଇବା
କରାଇବେ ପ୍ରତ୍ୟକ୍ଷ ଶ୍ରୀଜଗନ୍ନାଥ ଅବା ଯେ ।
ଏହା କହି ସେ ଚିତ୍ର ପୁରୁଷ ଦେଖାଇଲେ
ଦୃଷ୍ଟି ଅନୁରାଗୁଁ ଚିତ୍ତ ବଳିଲା ଜାଣିଲେ ଯେ ।୫।
ସହଚରୀ ବଚନେ ଲେଖିଲେ ଚିତ୍ରନାରୀ
ତାହା ଯେହ୍ନ ହରଷେ ଚଳିଲା ମାଳାକାରୀ ଯେ ।
ଦୂତେ ତାଙ୍କ ପଟ୍ଟ ବୋଲି ଫେଡ଼ି ଅନାଇଲେ
ଦିବ୍ୟ ସୁନ୍ଦରୀଙ୍କ ଦେଖି ଯେହ୍ନେ ଚଳିଲେ ଯେ ।୬।
ବିରହ ଅନଳ ଅନ୍ତର୍ଗତେ ଜାତ ହୋଇ
ଦିନୁ ଦିନୁ ତନୁ ତନୁ କଳାକରମୁଖୀ ଯେ ।
ବିଷ ଆଶୀବିଷ ବିଷ ସମାନ ଅଶନ
କଲେ ମାଳା ପାଶ ପାଶ ଶଙ୍କା ହୁଏ ମନ ଯେ ।୭।

---

୭ । ଦିନୁ ଦିନୁ—ଦିନକୁ ଦିନକୁ, ପ୍ରତିଦିନକୁ । ତନୁ—ଶରୀର, କ୍ଷୀଣ; କଳାକରମୁଖୀ—ଚନ୍ଦ୍ରମୁଖୀ; ବିଷ—ଜଳ, ଅଶନ—ଭୋଜନ; ଆଶୀବିଷ ବିଷ—ସର୍ପବିଷ, ସମାନ—ତୁଲ୍ୟ; ପାଶ—ପାଖ, ଫାସ ।

ଲାବଣ୍ୟବତୀର ହୃଦୟରେ ବିରହ ଅନଳ ଯେତେବେଳେ ଜାତ ହେଲା, ସେହି ଚନ୍ଦ୍ରବଦନାର ଶରୀର ଦିନକୁ ଦିନ କ୍ଷୀଣ ହେବାକୁ ଲାଗିଲା । ପାନଭୋଜନାଦି ସବୁ ସାପର ବିଷ ପରି ମନେ ହେଲା । ମୁଣ୍ଡରେ ବାନ୍ଧିବା ପାଇଁ ଫୁଲମାଳା ପାଖକୁ ଆଣିଲେ ତାହା ଫାସ ପରି ଶଙ୍କା ହେଲା । ଏ ସବୁ କନ୍ଦର୍ପ ବିକାର ହେତୁ ସମ୍ଭବ ହେଲା ।

ଚନ୍ଦ୍ରପୁର ଚନ୍ଦ୍ରକର ଚନ୍ଦ୍ରଚୂର ତାରେ
ତାପଦଣ୍ଡ ସ ଆତପ କର ସମାନରେ ଯେ ।
ଚନ୍ଦ୍ରଚୂଡ଼ ଶନ୍ତା ଚନ୍ଦ୍ରଗୋଷ୍ଠ ଚଣ୍ଡେ ସ୍ଥିତ
ଘଟେ ଅନାଇଣ ବାଳା ଚନ୍ଦ୍ରମା ଉଦିତ ଯେ ।୮।
ବୋଇଲ ତୁ ଦନକର ନାଶ୍ ଗ୍ରର ବଧ
ଏଥୁଁ ତୋର ଅବା ହେଉଅଛୁ କେଉଁ ସଧ ଯେ ।
ସଖୀଙ୍କ ପୁଣି ବୋଇଲ ଏହାକୁ ଶୀତଳ
ବୋଲୁଥାନ୍ତି କ କହିଁ ପଣ୍ଡିତ ସକଳ ଯେ ।୯।
ସବସ୍ଥାନ ଜାଣନ୍ତି ସମସ୍ତ ଲୋକୁ ବଡ଼
ମହାଯୋଗୀ ଭୋଗି ବଯୋଗୀ ଅତ୍ୟନ୍ତ ମୂଢ଼ ଯେ ।
ଏହାକୁ ତୁଳନା କର ତୁଚ୍ଛଦ୍ରବ୍ୟ ତୁଲେ
ବଷର ବଷ ଅନଳ ଉପରେ ଦହିଲେ ଯେ ।୧୦।
ଆଦ୍ଭୁର କଥାଏ ସଖି ବଳୁଅଛୁ ମନ
ଶିବନେତ୍ରାନଳେ ଭସ୍ମ ଯିବାରେ ମଦନ ଯେ ।
କ ସୁନ୍ଦର ମରୁଛି ବସ୍ତୁର ଧାତା ଯାଇଁ
ତହୁଁ କ ସୁଖ ଜାଳର ନହେ ଅଛି ଥୋଇ ଯେ ।୧୧।
କଳଙ୍କ ବୋଲଣ ଯାହା କହନ୍ତି ପଣ୍ଡିତ
ନୁହଇ ସେ ସେହି ଧୂମ୍ର ହୋଇଛି ବ୍ୟକତ ଯେ ।
ନୋହିଲେ କାହିଁକ ବଯୋଗୀଙ୍କ ଉବାଉଛି
ଯୋଗୀ ଜନମାନଙ୍କର ସୁଖ କରାଉଛି ଯେ ।୧୨।

---

୮ । ଚନ୍ଦ୍ରପୁର—ଚନ୍ଦ୍ରଶାଳା, ପ୍ରାସାଦାନ୍ତର୍ଗତ ସର୍ବୋଚ୍ଚ ଗୃହ-ବଶେଷ; ଚନ୍ଦ୍ରକର—ଚନ୍ଦ୍ରକରଣ; ଚନ୍ଦ୍ରଚୂର କର୍ପୂର । ସ୍ୱ-ଆତପ କର—ଜଷ୍ଣ ହୋଇଥିବା କରଣ ଅର୍ଥାତ୍ ଉତ୍ତପ୍ତ ସୂର୍ଯ୍ୟ କରଣ; ଚନ୍ଦ୍ରଚୂଡ଼—ଶିବ; ଚନ୍ଦ୍ରଗୋଷ୍ଠ—ସୁନାଗୋଷ୍ଠ ।

କୁହୁ ତିଥି ସବୁଦିନେ ଧାତା ନ ରଖିଲା
ତମକୁ କେବଳ ଶିର କରି କପାଁ କଲା ଯେ ।
ମଗଧପତିଙ୍କ ଯୋଡ଼ କି ଯଶ ଜବର
ତାହାକୁ କପାଁ ନ କଲା ଯେମନ୍ତ ପ୍ରକାର ଯେ ।୧୩।
ପକ୍ଷକେ ଥରେ ମରଇ ପୁଣି ଜୀବ ପାଇ
ମାଇଲେ ମରିବ ଏଣୁ ମନକୁ ଆସଇ ଯେ ।
ସ୍ୱଭାବ ଏହାର ଥିବ ଜଳ ନକଣରେ
ଆରେ ପ୍ରେମଶୀଳ ଶିଳା ପକାଅ ତର୍ଣ୍ଣିରେ ଯେ ।୧୪
ଶୀତଳ ତ ଘାଳମଣି ଅନଳ ସମାନ
ସହଚରୀ ମୁଖ ଚାହିଁ କହୁଛି ଏସନ ଯେ ।
ଗ୍ରୀଷ୍ମଋତୁ କିବା ସଖି ହୋଇଲା ପ୍ରବେଶ
ଆଜ ନଷ୍ଟେଁ ଜଳ ଯାଉଅଛି ବନଦେଶ ଯେ ।୧୫।
ଅସୁର ଜନମା ସୁତ ନାମ ତା ଆସୁଗ
ସେ ଦେବତା ବୋଲାଉଛି ଦେଖ ମହାଭାଗ ଯେ ।
ଜାଣି ଇନ୍ଦ୍ର ଗର୍ବେ ଥାଉଁ ଦଣ୍ଡ ଦେଉଥିଲା
ଏବେ ସେ ବିଧାତା ଜାଣି ଅନ୍ତ୍ରମୁଖେ ଦେଲା ଯେ ।୧୬।
ପୁଣି କାମେ ଉଦ୍ଦେଶି ବୋଲଇ ସୁକୁମାରୀ
ମାରି ନାରୀ କି ଯଶ ଲଭିବ ହର-ଅରି ଯେ ।
ଅରଧର-ସୁତ ହୋଇ ତ ପୁଣ୍ୟ ବିହୀନ
ହୀନ ତନୁ ହେଲେ ନ ଗଲା ଏ ବୁଦ୍ଧିମାନ ଯେ ।୧୭।

---

୧୩। କୁହୁ - ଶୁଦ୍ଧ ଅମାବାସ୍ୟା "ସା ନଷ୍ଟେନ୍ଦୁକଳା କୁହୂଃ ଇତ୍ୟମରଃ" ।

୧୭। ଅରଧର—ତକ୍ଷଧର, ବସ୍ତୁ ।

ଚୋଦ୍ଦ ନାଶ ବେଳେ ଆଜ ପକ୍ଷ ସେ ନୋହିଲା
ନୃଶଂସ ସ୍ୱଭାବ ଯେଣୁକରି ଜାଣିଥିଲା ସେ ।
ମନୁ ଜାତ କରଣ ତାହାକୁ ତାପ ଦେଇ
ଏ ବତ୍ସର ସିଦ୍ଧ ପୁଣି ଶିଶା କଲୁ କାହୁଁ ସେ ।୧୮।
ଏମନ୍ତ ବଚନମାନ ସଖୀମାନେ ଶୁଣି
ବକ୍ଷଜଳେ ଚକ୍ଷୁ ପୁଣି ଭିଜିଲା ରମଣୀ ସେ ।
ଏହା ଅନ୍ତର୍ଗତେ ଜାତ ହୋଇଲା ବିରହ
ଅତି ସୁକୁମାରୀ କେହ୍ନେ ହେବ ଦୁଃଖସହ ସେ ।୧୯।
ଏ ସମୟେ ମାତାପୁରୁଁ ସ୍ମରଜଣ ଆସି
ଅନ୍ତଃପୁର ଦାସୀମାନଙ୍କର ପରବାସୀ ସେ ।
ତୁମ୍ଭମାକୁ ବୋଇଲେ ଶୁଣ ଉତ୍ସବ ସନ୍ଦେଶ
ଏହିକ୍ଷଣି ରାଜା କହୁଥିଲେ ରାଣୀପାଶ ସେ ।୨୦।
ସେ ସନ୍ଦେଶ କହିବ କି ଦେବୁ କି ଗୋ ମୋତେ
ଚିତ୍ରପଟ ଦେଖିଲେ ସମାନ ବର ତୋତେ ଗୋ ।
ଦୂତ ଯାଇଅଛୁ ସେହି ଶୈଳପତି ପାଶେ
ଦମ୍ପତି ସମ୍ମତି ହେବ ଅଳପ ଦିବସେ ଗୋ ।୨୧।
ଏ ବାରତା କହି ମୃଦୁସୁଲୀ ତହୁଁ ଗଲା
ରମଣୀ ବଚନ ଶୁଣି ହରଷ ହୋଇଲା ସେ ।
ଶୈଳ ଦେଶେ ଗଲା ଦୂତ ନୃପ ସନ୍ନିଧାନ
କହିଲେ କନ୍ୟା ମିଳଲା କୁମାର ସମାନ ସେ ।୨୨।
ଦୂତ ପଟ କୁମାର ରତନ କରେ ଦେଲା
ମହାଚକ୍ଷ ଚିତ୍ରମସ୍ତୁ ଫେଡ଼ ଅଜାଇଲା ସେ ।
ବୁଧଜନ ମାନସ ଶ୍ରବଣେ ତୋଷକର
ଏ ଶ୍ରୀବତ୍ସ ଚରିତ ସୁଧାରସ ପୂର ସେ ।୨୩।

ଦୂର୍ବାଦଳ ଶ୍ୟାମଳ କମଳ-ଦଳ ନେତ୍ର
ଧୃତ ଦନୁଜବଂଶ ଦହନ କଙ୍କ-ପତ୍ର ଯେ ।
ଯେ ରାମଚରଣ ଧ୍ୟାୟି ଉପଇନ୍ଦ୍ର କହ୍ନ
ଚତୁର୍ବିଂଶ ପଦେ ଏହୁ ଛାନ୍ଦ ଶେଷ ହୋଇ ଯେ ।୨୪।

---

# ତୃତୀୟ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

ଏଥୁ ଅନନ୍ତରେ ତହିଁ ରସିକ ପଣକୁ ଚାହିଁ
ବର୍ଣ୍ଣିରଇ ନାହିଁ କାହିଁ ଏଡ଼େ ସୁନ୍ଦରୀ,
କି କରେ କହିଲି ବହି ଶୋଭା କି ଚାହିଁଲି ନାହିଁ
ହୋଇଥାନ୍ତା ଭ୍ରମ ସେହି ମଦନେ କରି ।
ଯେହ୍ନ ଜାଣ ବ୍ୟାସକୁ ବଶ,
ନୁହନ୍ତା କି ଲେଖା ଦେଖି ଶୋଭା ଆଭାସ । ୧ ।
ଆହା ଏ ଅତୁଳ୍ୟ ରୂପ ଅବଧ୍ୟ ଅମୃତ କୂପ
କେ ନୋହିବଟି ଲୋଲୁପ ଏହାକୁ ଚାହିଁ,
ଆସେ ଏମନ୍ତ ମନକୁ କାମକୁ ଜୀବ ଦେବାକୁ
ଆସିଛୁ ମହୀତଳକୁ ପଙ୍କଜମୁହିଁ ।
କିବା ଯୁବା ମୋହନ ମନ୍ତ୍ର,
ଅବନୀରେ ଉତପନ୍ନ ଭଆଇ ଗାତ୍ର । ୨ ।

---

୨୪ । କଙ୍କପତ୍ର—ବଗପକ୍ଷଯୁକ୍ତ ବାଣ ।

ଜଗତ ଜୟୀସ୍ତ କାମେ ବିଧାତା କ ଦେଲ ଭ୍ରମେ
ଏଥର ରହିବ ନାହିଁ ଯୋଗୀ ସମାଧି,
ଯାହାକୁ ବୋଲ ସୁନ୍ଦର ସାକ୍ଷାତ ଏବେ ସଂସାର
ଉପମା ଦେବଟି କବ କାହୁଁ ସମ୍ବାଦ ।
ଯେବେ ମହିଁ କୃତାର୍ଥ ହେଲି,
ରମଣୀ ଶିରୋମଣି କ ଯାହା ବହିଲି । ୩ ।
ତାଙ୍କୁ ମୁଁ ଚହେ ଦେଖିଲି ନୟନ କୃତାର୍ଥ କଲି
ଖାଲିଁଥାଉଁ ମୋକ୍ଷ ହେଲ ମୋ ବଡ଼ ଭାଗ୍ୟ,
ସେ ପୁଣି ଦୟା କରିବ ଏମନ୍ତ କ କର୍ମେ ଥିବ
ତାହା ସମ ହୋଇବାକୁ ମୁଁ ନକ ଯୋଗ୍ୟ ।
କର୍ମେ ଯେବେ ନାହିଁ ମୋହର,
ଚିତ୍ରପଟେ ଆସି କପାଁ ମିଳନ୍ତା କର । ୪ ।
ଯାହାର ଯୁବା ବୟସେ ମନର ଯୁବତୀ ପାଶେ
ନାହିଁ ତାହା ଖାଇଁବାର କ ପ୍ରୟୋଜନ,
ମାରଦଣ୍ଡ ପଦ ହୋଇ ତ୍ରିଭୁବନେ କଷ୍ଟ ନାହିଁ
ତାପ ନାହିଁ ଏକା ହୋଇ ନେବାରୁ ଦିନ ।
କର୍ଣ୍ଣ କର ତାକୁ ନ ଗଣି,
ଯେ ତରୁଣୀ ରସଗର୍ଭ ବାଣୀ ନ ଶୁଣି । ୫ ।
ଅଧର ବିମ୍ବ ସମାନ ହାସରେ କରାଇ ପାନ
ସଧୀରେ କର ଗମନ ପାଶେ ମିଳିବ,
ନେତ୍ର ଖଞ୍ଜନ ଯେନାଇ ନାସିକା ପୁଟ ଫୁଲାଇ
ଗେହ୍ଲାଇ କନ୍ତ ବଚନ ପ୍ରକାଶୁ ଥିବ ।
ଦେଖି ଯେଉଁ ସୁଖ ଜନ୍ମିବ,
ତେତେବେଳେ ଇନ୍ଦ୍ରସୁଖ ନକ ଲେଚ୍ଛୁବ । ୬ ।

---

୬ । ଲେଚ୍ଛୁବ—ତ୍ୟାଜ କରିବ ।

ଯେସନ ଉତ୍ତମ କାମିନୀ ସ-ଚନ୍ଦ୍ରକର ଯାମିନୀ
ପ୍ରବେଶ ପୂର୍ଣ୍ଣଚନ୍ଦ୍ରମା ଉପରେ ବସି,
ଉରଜୁଁ ବାସ ଉତ୍ତାର ତାକୁ ସୁସୁନ୍ଦର କର
ଆଲିଙ୍ଗନ କରୁଥିବ ଅଙ୍ଗରେ ମିଶି ।
କେଉଁ ଭୋଗ ସେହି କାଳକୁ,
ସମାନ କରିବ ସେହି ସୁଖ ତୁଳକୁ । ୭ ।
ଅଧର ପାନ ଚୁମ୍ବନ ସୁରତ କୁଚମର୍ଦ୍ଦନ
କରଜ ରଚନ ନଖକ୍ଷତ ସୀତ୍କାର,
ଦୃଢ଼ତର ଆଲିଙ୍ଗନ ଏକୁ ଏକ ମୋହମାନ
ଏକ ନାୟିକାରୁ ଜାତ ଏତେ ପ୍ରକାର ।
ଯଥା ପଦ୍ମ ବିବିଧ ବିଧି,
ଦଧି ନବନୀତ ଆଦି ଚିତ୍ତକୁ ବୋଧି । ୮ ।
ନୃପତି ରାଜ୍ୟ ବିହୀନ ମନୁଷ୍ୟ ହୀନ ନୟନ
ଯୁବତୀ ବିହୀନ ଯୁବା ତିନି ସମାନ,
ମୋହର ଏ ବୟସରେ ଯୁବତୀ ନାହିଁ ପାଶରେ
ବିଅର୍ଥ ଏ ସମ୍ପଦରୁ ଭାଜିଲା ମନ ।
ମନାଇବି ମହେଶ୍ୱରଙ୍କୁ,
ପାଇବି ପ୍ରାଣବାନ୍ଧବୀ ନୃପସୁତାକୁ । ୯ ।
ଏ କାଳେ ସଚିବସୁତ ମିଳି କୁମର ପୁରତ
ବୋଇଲା କି ଚିନ୍ତା ମିତ ଚିତ୍ତେ ଜନିତ,
ଯୁବରାଜ ବୋଲେ ଦେଖ ଏ ଚିତ୍ର ସୁନ୍ଦରୀ ମୁଖ
ମଦନ ମହାବହ୍ନିଶିଖ ଏ ରୂପବନ୍ତ ।
ଏହା ଶୁଣି ସେହୁ ହସିଲା,
କହୁଥିଲେ ମୋ ଜନକ ବୋଲି କହିଲା । ୧୦ ।

କେରଳ ରାଜାର ଦୂତ ହୋଇଅଛୁ ଉପସ୍ଥିତ
ଏ କନ୍ୟା ସମାନ ବର ତୁମ୍ଭଙ୍କୁ ବୋଲି,
ସମ୍ମତ କଲେ ରାଜନ ହେଉଛୁ ସମ୍ଭାରମାନ
ସମସ୍ତେ ସେ ଦେଶେ ଯିବା ଆଜ କି କାଲି ।
ଶୁଣି ବୀର ଏମନ୍ତ ଭାଷି,
କାହିଁକି କରୁଛ ହାସ୍ୟ ମଇନ୍ତ ଆସି । ୧୧ ।
ସିନ୍ଧୁ କି ଚଳୁରେ ରହି ନର କି ଧରଣୀ ବହି
ପକ୍ଷ ବିନା ନଭେ ଯାଇ ହୁଅଇ ନକ,
ଦିତିର ନନ୍ଦନ ହୋଇ ଦେବତା ନକ ବୋଲାଇ
ଏହା ହେଲେ ପାଇବ ମୁଁ ସୁବରମାକ ।
ମନ୍ତ୍ରୀସୁତ କହଇ ମିତ,
ଏମାନ ହୋଇଛି କଷ୍ଟ ନ ଧର ଚିତ୍ତ । ୧୨ ।
ଚଳୁ କଲେ ସିନ୍ଧୁ ମୁନି ପାର୍ଥ ବନ୍ଧିଲେ ଅବନୀ
ଗଗନେ ଗମିଲେ କପି ବାତ ଦେବ ତ,
ସେ ରୂପେ ତୋ କର୍ମେ ଅଛି ଲଭିବୁ ବାଳ ମୃଗାକ୍ଷି
ଶୁଣିଣ ନୃପତି ସୁତ କି ଆନନ୍ଦିତ ।
ମାକନ୍ଦ ଲଭିଲା କି ପିକ,
ଜଳଦ ଜଳ ଲଭିଲା କିବା ଚାତକ । ୧୩ ।

---

୧୨ । ଦିତିର ନନ୍ଦନ—ଦୈତ୍ୟ, ଅସୁର ।

୧୩ । ମୁନି—ଅଗସ୍ତି ମୁନି । ମାକନ୍ଦ ଆମ୍ବ "ଆମ୍ରଶ୍ଚୂତୋ ରସାଳୋଽସୌ, ମାକନ୍ଦଃ ପିକବଲ୍ଲଭଃ ଇତ୍ୟମରଃ" ।

ଅନ୍ଧ କି ପାଏ ନୟନ ନିର୍ଦ୍ଧନ ପାଏ କି ଧନ
କ୍ଷୁଧାର୍ତ୍ତି କରେ କି ହେଳା ଦ୍ରବ୍ୟ ଭୋଜନ,
ଏମନ୍ତେ କଛୁହିଁ ଦିନ ଅନ୍ତରେ ସାଜିଲା ସୈନ୍ୟ
ପୁଣ ବିବାହ କରାଇ ଗଲେ ରାଜନ ।
କେତେଦିନେ କେରଳେ ମିଳି
ଲଗ୍ନେ ବିଭା କରାଇଲେ ପୁରୁଷ ବାଳୀ । ୧୪ ।
ଏମନ୍ତେ ହୁଏ ରଜନୀ ନୃପତିସୁତା ସଜନୀ
ମଧୁଶଯ୍ୟା ପୁରେ କାନ୍ତ ବିଜେ କରାଇ,
ବିବିଧ ସୁବେଶ କରି ବିମ୍ବାଧରୀ କର ଧରି
ପରିବେଶ କଲା ହାସ୍ୟ ବଚନ କହି ।
ଏକାନ୍ତେ କାନ୍ତାଙ୍କୁ ଦେଖିଣ,
କାନ୍ତ କାନ୍ତା କର ଧରି ନେଲା ତକ୍ଷଣ । ୧୫ ।
ମୃଦୁ ଖଟ୍ଟୂରେ ରସାଇ ଜାନୁ ଉପରେ ବସାଇ
ସୀତ୍କାର ଜାଣି ଆରମ୍ଭିଲା ସୁରସ,
ଚିବୁକ କରେ ଧରିଲା ବଦନେ ଚୁମ୍ବନ ଦେଲା
ଉରଜ ମର୍ଦ୍ଦନ କଲା ହୋଇ ହରଷ ।
କ୍ରମେ କ୍ରମେ ଫିଟାଇ ବାସ,
ରତି ଶରଣକୁ ଚିତ୍ତ କଲା ପ୍ରକାଶ । ୧୬ ।
କଚ୍ଛପ ସାରି କାର୍ମୁକ ପାଷଦ, ଚନ୍ଦ, ଓବାଳକ
ଏ ଆଦିରେ ବନ୍ଧଯାକ କଲା ଆରମ୍ଭ,
ରମା ରଚି ନାନା ରତି କଲା ବିପରୀତ ରତି
ତୁଟିଲା କ୍ରମେ ସେ ତହିଁ ଦର୍ପକ ଦମ୍ଭ ।
ନିଶି ଅବଶେଷ ହୋଇଲା,
ସଖିଙ୍କ ପାଶରେ ଯାଇ ଜେମା ମିଳିଲା । ୧୭ ।

ବାହାରେ ବଜଧ୍ୱଜ ନୃପ- ନନ୍ଦନା ସଙ୍ଗି କଳାପ
ସମୀପେ ମର୍ଦ୍ଦନ ଆଦି ବିଧି ସାରିଲେ,
ରହିଲେ କେରଳ ଦେଶ ସପତ ନାଶି ପ୍ରବେଶ
ଯଜ୍ଞଭୁକ ପାଇ ସ୍ୱଦେଶକୁ ଚଳିଲେ ।
ନିଜ ନଗ୍ରେ ପ୍ରବେଶ ହେଲେ
ବହୁତ କାଳ ଦମ୍ପତି ସୁଖେ ମଜିଲେ । ୧୮ ।
ଏମନ୍ତେ ପିତୃଭବନ ହୁଅନ୍ତେ ତହିଁ ପ୍ରବେଶ
ମୃଗ ମାରିବାକୁ ବୀର ବନକୁ ଗଲା,
ଦେଖିଣ ସୁନ୍ଦର ରୂପ ମଦନେ ହୋଇଲା ଲୋପ
ଅସୁର ତନୟା କୁମାରକୁ ହରିଲା ।
ସୈନ୍ୟ ଖୋଜି ବାହୁଡ଼ି ଆସି
ଶୁଣି ସନ୍ତାପିତ ତାତ ଚିତ୍ତ ଅନିଶି । ୧୯ ।
ତେତେଣେ ନୃପତିନନ୍ଦନ ବିରହେ ଅତୀବ ଦୀନ
ଏଣେ ନୃପତିନନ୍ଦିନୀ ଦୁଃଖ ଅଶେଷ,
ରଘୁନାଥ ପଦ୍ମ ଗୁଣି ଉପେନ୍ଦ୍ର ଭଞ୍ଜ ଭଣି
ଆର ଛାନ୍ଦରେ କହିବା ଏଥିର ରସ ।
ଏ ଚରିତ ରଚନା ସାର,
ବିଂଶତି ପଦରେ ଶେଷ ସୁମନୋହର । ୨୦ ।

---

୧୯ । ଅନିଶି—ଅହର୍ନିଶ ବା ସବୁବେଳେ

# ଚତୁର୍ଥ ଛାନ୍ଦ

## ରାଗ—କେଦାର ଚକ୍ରକେଳି

ହେଲା ବରଷା କାଳ ସୁରଞ୍ଜନ,
ନଭ ଲେପି ଦେଲା ପ୍ରାୟେ ଅଞ୍ଜନ ।
ଆସି ଆଷାଢ଼ ଯେ ଘନ ଘୋଡ଼ାଇ,
ଗିରି ଗିଳି ଦେଖାଇଲା ବଡ଼ାଇ । ୧ ।
ଅନବାର ଜଳଧାର ପ୍ରକାଶ,
ଲୋକ ଲୋକନେ ନୋହିଲା ଆକାଶ ।
ପୂରି ତଟିନୀ ତଟକୁ ଗ୍ରାସିଲା,
ଫେନମୟ ଜଳ ଶୋଭା ଦଶିଲା । ୨ ।
ରଖି ବରହୀ ଶିରେ ବରହଣ,
ନୃତ୍ୟ କଲେ ଗିରି ଶିଖେ ଉଲ୍ଲଣ ।
ଅନୁକ୍ଷଣେ ଧ୍ୱନି କଲେ ଦର୍ଦ୍ଦୁରି,
ଶୁଣି କାମେ ଚେତନା ହେଲା ଦୂର । ୩ ।
ବନ ଅନଳ ନାଶକୁ ଉଜଳେ,
କେକୀ ଡାହୁକମାନେ ଗରଜଲେ ।
ସରସିଜନାଳ କରି ସମ୍ବଳ,
ମେରୁ ଗମନ କଲେ ହଂସକୁଳ । ୪ ।

---

୩ । ବରହୀ ବା ବର୍ହୀ—ମୟୂର, ବରହଣ—ମୟୂରପୁଚ୍ଛ ।
୪ । ହଂସବଳ—ପାଠାନ୍ତର ।

ଝଟ ଝଟ ହୋଇ ବିଦ୍ୟୁ ଚମକ
କି ସେ କାମ କରବାଳ ଝମକ ।
ପରକାଶିଣ ଘୋର ଅନ୍ଧକାର,
ନିଶି ଦିବସ କଲା ଏକାକାର । ୫ ।
କାମ ଭୂପ ଦାତା ଫୁଲ ବିଶିଖ,
ପଡ଼ ଚଢ଼କ ଚୂନା ଗିରିଶିଖ ।
ମହୀଧରରୁ ନିର୍ଝର ବହିଲେ,
କରି ମଦଧାରା ଭ୍ରାନ୍ତେ ଶୋହିଲେ ।୬।
ଅବନୀରୁ ଇନ୍ଦ୍ର ଗୋପ ଜନମି,
ହୃଦ ଦୁଲୁ ଦୁଲୁ କଲେ ସ୍ତନମି ।
ମକ ମକ ଧ୍ୱନି କଲେ ସାମୁକ,
ବନପ୍ରିୟ ଶୁଣି ଭଜିଲେ ମୂକ । ୭ ।
ବନେ ସୁଗନ୍ଧ ମାଳତୀ ଫୁଟିଲେ,
ବାସ ଅନୁସରି ଭୃଙ୍ଗେ ମାତିଲେ ।
ଗୁଡ଼ ଉଦରି କେତକୀ ପ୍ରକାଶ,
କଲେ ଦମ୍ପତୀ ମାନସ ଉଲ୍ଲାସ । ୮ ।
ଛଦ ଶୋଭା ଛତ୍ରମାନେ ଲଭିଲେ,
ଜାତି ଯୂଥିକା ସୁମନେ ଶୋଭିଲେ ।
ଜ୍ୟୋତି ପ୍ରକାଶିତ ଜ୍ୟୋତିରିଙ୍ଗଣ,
ପଥ ପିଚ୍ଛିଳ ପଥିକରିଙ୍ଗଣ । ୯ ।

---

୭ । ଭଜିଲେ ଶୁଣି—ପାଠାନ୍ତର ।

୯ । ଜାତି—ମାଳତୀ ପୁଷ୍ପ, ରିଙ୍ଗଣ—ଉନ୍ମାର୍ଗଗାମୀ, ଯୂଥିକା—ଜୁଈଫୁଲ ।

ନେତ୍ର ଶିଳନ୍ତ୍ର ପ୍ରସ୍ତେ ଶୋଭାବତୀ,
ଚନ୍ଦ୍ରସୂର୍ଯ୍ୟ ଦରଶନ ଗବାସି ।
କର ବର୍ଣ୍ଣନ ଏ ରଘୁ କୁମାର,
କଲ ପ୍ରହାର ତୀକ୍ଷ୍ଣ ଶର ମାର । ୧୦ ।
ନୟନରୁ ଲୋତକ ବିସର୍ଜିଲା,
କ୍ଷଣ ପର୍ଯ୍ୟନ୍ତେ ଅବଳା ଭଜିଲା ।
କେତେବେଳେ ସେ ଲଭିଣ ଚେତନ,
ବୋଲେ ଶୀଘ୍ରେ ହେଉ ବଜ୍ର ପତନ । ୧୧ ।
ପାଇଥିଲି କର କେତେବର୍ଜ୍ଜନ,
ହେଲି ଭିନ୍ନ ସେ ରମଣୀ ରତନ ।
ଏହି ଘଡ଼ଘଡ଼ ଶୁଣି ଡରଇ,
ନିଜ ଅଙ୍ଗୁଳି କର୍ଣ୍ଣରେ ଭରଇ । ୧୨ ।
ବିଦ୍ୟୁ ଝଟକଲେ ବୁଜେ ଈକ୍ଷଣ,
ମୋର ଅଙ୍ଗେ ମିଶଇ ତତକ୍ଷଣ ।
ମଜ୍ଜି ମଦନ ମଦେ ସିତ୍କାରେ,
ମୋତେ ଭୁଜେ ଭିଡ଼ଇ କି ପ୍ରକାରେ । ୧୩ ।
ସୁଧା ପାନ କରଇ ଯେ ଅଧରୁ,
ଏବେ ଏ ମହା କଷ୍ଟଣୁ ଉଦ୍ଧରୁ ।
ମାନ କରିବାର ନାହିଁ ସ୍ୱପନେ,
ଦେଖିନାହିଁ ବିରସତା ଲପନେ । ୧୪ ।

---

୧୨ । ପାଇଥିଲି କର କେତେ ବର୍ଜନ—ମନସ୍କାମ ପୂରଣ ହେବା ପାଇଁ ବିଭିନ୍ନ ପ୍ରକାର ଗୁଡ଼ କରିଥାଆନ୍ତି ।

କଲା ସେ ସ୍ୱପ୍ନ ମୋ ହୃଦେ ସଦନ,
ତାହା ଚେତାଇ ଚହୁଛି ମଦନ ।
ଏକେ ଶୋଇଥିଲା ନିଦ୍ରା ଅଳସେ,
ବାସ ପରେ ଥିଲା କୁଚ କଳଶେ । ୧୫ ।
ଦେଖି ଦୂରୁ ମୁଁ ଭାବିଲି ମନରେ,
ରହୁଛି ସୁ ଦ୍ରବ୍ୟ ବାସ ଭିତରେ ।
ପାଶେ ପ୍ରବେଶରୁ ତାହା କାଢ଼ିଲି,
ଶୋଭା ସିନ୍ଧୁ ଦରଶନେ ବୁଡ଼ିଲି । ୧୬ ।
ଯାହା ବୋଲି ପୟୋଧର ତାହାର,
ହେମଭୂମି ଫୁଟି ଶମ୍ଭୁ ବାହାର ।
ଚୁମ୍ବିବାରୁ ସନ୍ତୋଷ ହେଲା ଚିତ୍ତ,
ଲଳା ପ୍ରଣାଳୀ ସ୍ୱେମାଳୀ ଜଡ଼ିତ । ୧୭ ।
ନାଭି ପାଦୋଦକ କୁଣ୍ଡ ପୂରିତ,
ପାଣି ପଙ୍କଜେ ପୂଜିଲି ତୁରିତ ।
ଏହି ସମୟେ ଚେତନା ବସିଲା,
ନିଜ କରେ ସେ ନୟନ ଘସିଲା । ୧୮ ।
ଫେଡ଼ି ମୋ ମୁଖକୁ ଯହୁଁ ଚାହିଁଲା,
ଉରେ ବାସ ଦେଇ ଲଜ୍ଜା ବହିଲା ।
ମନ୍ଦେ ହସି କି କଲା କି ବଚନ,
ତାହା ଚେତାଇ ଚହୁଛି ମଦନ । ୧୯ ।
ସ୍ୱପ୍ନକାଳ ହୋଇଥିଲେ ରମଣୀ,
ଯେବେ ଯାଇ ମୁଁ ପାଶକୁ ନଜାଣି ।

---

୧୯ । ଉରେ—ବକ୍ଷରେ ।

ଶିର କମ୍ପାଇ କ ଭଙ୍ଗି ରଚଇ,
ପାନପିକ ଅବସରେ ମୁଞ୍ଚଇ । ୨୦ ।
ପୋଛୁ ସିନ୍ଦୂର ଚଷକ ଅଞ୍ଚଳେ,
ପୁର ଭିତରେ ପଶଇ ଚଞ୍ଚଳେ ।
ଜାଣି ପଣ୍ଟିଲେ ଭଣ୍ଡେ ରଦନ,
ତାହା ଚେତାଇ ଦେଉଛି ମଦନ । ୨୧ ।
ବଦନେ ଚନ୍ଦ୍ରମା କରି ଦରଶନ,
ସ୍ତନମଣ୍ଡରେ କଲି ମୁଁ ବିବସନ ।
ଦୂର ହୋଇଯିବାରୁ କର ଚୀର,
ହେମ ତନୁ ଦିଶିଲା କ ରୁଚିର । ୨୨ ।
ତହୁଁ ରସାଣ ସେ କାଳ ଅଟଇ,
ଏହି ଉପମା ଚିତ୍ତେ ପ୍ରକଟଇ ।
ରମା ଚମକିତ ଲଜ୍ଜା କାତରୁ,
କର ଯାଇ ମୋର ଅନାବୃତରୁ । ୨୩ ।
କଲି କାମ ଆୟୁଧ ପରଶକୁ,
ନିନ୍ଦା କଲି କୋମଳ ଶିରଷକୁ ।
କର ଲାଗି ଯେ ଲୋମ ଉଲ୍ଲସିଲା,
ହା ହା ନାଗଫୁଲ ପ୍ରାୟେ ଦିଶିଲା । ୨୪ ।
ସେହିଦିନୁ ଜଘନକୁ ଦେଖିଛି,
ବଳୀ ରଜ୍ଜୁରେ କଚ୍ଛପ ବାନ୍ଧିଛି ।
ସେହି ଭାବ ସିନା ଧୈର୍ଯ୍ୟ ଛେଦନ,
ତାହା ଚେତାଇ ଦେଉଛି ମଦନ । ୨୫ ।

---

୨୪ । ଶିରଷ—ଏକପ୍ରକାର କୋମଳ ପୁଷ୍ପ ।

ବ୍ୟପଶ୍ଚାତ କରିବାକୁ ବାନେକ,
ମୁଁ ଯେ ନିୟମ କରିଲି ଅନେକ ।
ଯେଣୁ ସେ ଅଟଇ ଅତି ଗୁଣିକ,
କଥା ବୋଲିଲା ମୋହର ମାଣିକ । ୨୬ ।
ସେହ୍ନ ସୁରତିକୁ ବେଗେ ଆଚରି,
ମନ ମୋହିଲା ମୋ କୁଶ ଉଦରି ।
ନୃତ୍ୟ କରାଇ ନାସା ମୋତିହାର,
ହୁଂ ହୁଂ ଧ୍ୱନି ହେଲା ମୁଖୁଁ ବାହାର । ୨୭ ।
ମୋତେ ସୁରତି ସାଗରେ ବୁଡ଼ାଇ,
କଟୀ ଚମକୁ ରସନା ବଜାଇ ।
ଝାଳେ ହୋଇଲା ଯେ ତନୁ କର୍ଦ୍ଦନ,
ତାହା ଚେତାଇ ଦହୁଛି ମଦନ । ୨୮ ।
ବନେ ନିଶି ଅବସାନେ ସତ୍ତ୍ୱରେ,
ଜଗ ହୋଇଥିଲା ଚୂନ ଚତ୍ୱରେ ।
ଜଳା କବାଟି ଫାଟେ ନିରେଖିଲି,
ବାଳା ରତାନ୍ତ ଶୋଭାକୁ ଦେଖିଲି । ୨୯ ।
କର ଅଙ୍ଗୁଳି ଅଙ୍ଗୁଳି ଛନ୍ଦିତ,
ଊର୍ଦ୍ଧ୍ୱେ କରିଥିଲା କର ବନ୍ଧିତ ।
ଯେହ୍ନେ ଚନ୍ଦ୍ରେ ତଡ଼ିତ ପରିବେଶ,
ଅଳସରେ ହୋଇଥିଲା ଆବେଶ । ୩୦ ।

---

୨୮ । କର୍ଦ୍ଦନ—କାଦୁଅ ।
୨୯ । ଚତ୍ୱର—ଅଗଣା ।

ଯଥା କୋକନଦ ଦଳ ବିକାଶ,
ଥିଲା ଅରବିନ୍ଦ ଚକ୍ଷୁଁ ପ୍ରକାଶ ।
ଲଭିଥିଲା ମୃଗମଦ ତିଳକ,
ଚନ୍ଦ୍ର ଧୋଇ ହୋଇଛି କି କଳଙ୍କ । ୩୧ ।
ଖସିଥିଲା ଯେ ଅଳସ ବସନ,
କୁଚ ଦୁଇ ଦିଶୁଥିଲା ପ୍ରସନ୍ନ ।
ସୁବଳସ୍କ ମହୀଧର ପରଶେ,
ଝିଙ୍କୁଁ ଝିଙ୍କୁଁ ଚେତନାକୁ ଗରାସେ । ୩୨ ।
ମୋଡ଼ୁଥିଲା ସେ ଅଙ୍ଗକୁ ରସିକା,
ଖର ନିଶ୍ୱାସୁଁ ଫୁଲଇ ନାସିକା ।
ସେହି ଶୋଭା ପିନା ଦନ୍ତ ଛେଦନ,
ତାହା ଚେତାଇ ଦେଉଛି ମଦନ । ୩୩ ।
ଦିନେ କ୍ୟାଳରେ ବୁଜି ମୁଁ ନୟନ,
କରିଥିଲି ଯେ ପଲଙ୍କେ ଶୟନ ।
ଚନ୍ଦ୍ରମୁଖୀ ପାଶେ ଯାଇଁ ମିଳିଲା,
ନିଦ୍ରାଗଲା ପ୍ରାୟେ ମନେ ଭାଳିଲା । ୩୪ ।
ଯାଇଁ ପଲଙ୍କ ପରକୁ ସ୍ନେହରେ,
ନ ଲଗାଇ ଦେହ ମୋର ଦେହରେ ।
କର ଭରଦେଇ ଦୁଇ ପାଖରେ,
ଧୀର କରି ଚୁମ୍ବଦେଲା ମୁଖରେ । ୩୫ ।
ମହାଦେବ ମହାଯୋଗ ଭଙ୍ଗିମା,
ଆଜ କି କରନ୍ତା ଅବା ରଙ୍ଗିମା ।
ରୁଣ୍ଡହେଲା ମୋ ଗଣ୍ଡରେ ପୁଲକ,
ପାଶେ ତ ଥିଲା ରମଣୀ ତିଳକ । ୩୬ ।

ମୁଁ ଯେ ତାକୁ କୋଳ କରି ଧଇଲି,
ଆଜ ଅଧରେ ଚୁମ୍ବ ଦଞ୍ଚ ବୋଇଲି ।
କଲା ଅଞ୍ଚଳେ ମୁଖ ଆଚ୍ଛାଦନ,
ତାହା ଚେତାଇ ଦହୁଛି ମଦନ । ୩୭ ।
ଦିନେ ମତ୍ତକରିବର ଗମନା,
କେଳି ବନେ ତୋଳୁଥିଲା ସୁମନା ।
ଉଡ଼ି ପଡ଼ିଲା ସୁମନ ସରଜ,
ଲୁହ ପୂରିଲା ନୟନ ସାରଜ । ୩୮ ।
କାନ୍ଦି ପାଇଁ ଭାଳହୋଇ ଚଞ୍ଚଳ,
ପୋଛିଦେଲି ଘେନ ନିଜ ଅଞ୍ଚଳ ।
ମୃଦୁ ମୃଦୁ ହସି ମୋତେ ଭିଡ଼ିଲା,
ଅଙ୍ଗେ ଓଦାବାସ ପ୍ରାୟ ଜଡ଼ିଲା । ୩୯ ।
ଏବେ ମୋହଲାଗି ଦୁଃଖ କେତେକ,
ପାଇ ନେତ୍ରେ ଭଣଥିବ ଲୋତକ ।
ଖିନ୍ନ ହୋଇଥିବ ପ୍ରୀତି କୁନ୍ଦନ,
ତାହା ଚେତାଇ ଦହୁଛି ମଦନ । ୪୦ ।
ଯାହା ସୁମୁଖୀ ସୁଖ ସୁମରିବା,
ଠାରୁ ଭଲହେବ ପିନା ମରିବା ।
ଗାଇ ଲଭ ସୁମନସ ବପଦ,
ଛାନ୍ଦ ସମାପ୍ତ ବୟାଳିଶ ପଦ । ୪୧ ।
ଦଶରଥ ରାଜା ପ୍ରିୟ ନନ୍ଦନ,
ସୀତା ହୃଦଦେଶ ଚନ୍ଦ୍ର ଚନ୍ଦନ ।
ମୋର ମହା କଷ୍ଟମାନ ଭଞ୍ଜ,
ଭାବେ ଭଣଇ ଉପଇନ୍ଦ୍ର ଭଞ୍ଜ । ୪୨ ।

---

# ପଞ୍ଚମ ଅଧ୍ୟାୟ

ରାଗ—କନଡ଼ା

କେତେବେଳେ ତହିଁ ମଧୁପକୁ ଦେଖି କୁସୁମ ଲତିକା ଉପରେ
ଗୀର ସୁମନସ ରୂପ ଉପରେ
ବିଳାପ କରି କହୁଛି ଏ ସମୟେ
ପ୍ରିୟା ନାହିଁ ସମୀପରେ, ହେ ମଧୁପ ।
ନିଶି ବାସର ହେଉଛି ଅସର
ବନ୍ଧୁ-ରୂପ ଦିଶେ ସବୁ ଦିଗର
ହଠ କରୁଛି ବନ୍ଧୁଥିବ ମଦନ
ହୋଇବାଯାଏ ଅସର, ହେ ମଧୁପ ।୧।
ତା ପରି କରି ପୀରତି ରତି ରତି ରତିଏକ ଜାଣି ନଥିବ
ଗୁଣବତୀ ସମ କାହୁଁ ଆସିବ
କହଇ ତା ଗୁଣ ଶୁଣ ମନଦେଇ
ଜୀବତେ ମନୁ ନ ଯିବ ହେ, ମଧୁପ ।
ମୋହ ଆଗମ ଦୃଷ୍ଟି ପରଶରୁ
ଛୁଡ଼ ଆସଇ ଉଭା ଯେ ରମ୍ଭୋରୁ
ଚିବୁକେ ତର୍ଜନୀ ଦେଇ ପଦାଙ୍ଗୁଳ
ମହୀରେ ଘଷେ ଝୁରୁଛି ହେ, ମଧୁପ ।୨।

---

୧ । ବାସର—ଦିବସ
୨ । ରତି—କାମକେଳି, କାମଦେବ ସ୍ତ୍ରୀ, ଅତି ଅଳ୍ପ ପରିମାଣ ।
ଜୀବତେ—ଜୀଇଁଥିଲା ଯାଏଁ ।

ଖସି ପଡ଼ୁଥାଇ ପୀୟୂଷ ଗୁଣି ଯେ ବଦନଶଶୀ ପୋଛିବାରୁ
ଏଣୁ ପ୍ରକାଶିତ ହୁଏ ହସିବାରୁ
ହାତଧରି କୋଳେ ବସାଇଲେ ତଳେ
ଖସି ବସଇ ସ୍ନେହରୁ, ହେ ମଧୁପ ।
କେବେ ହୋଇନାହିଁ ଏହୁ ଭରମ
ମୋ ଆଡ଼କୁ କରିବାରେ ଚରମ
ହାର ବାହାର କରଇ ଆଲିଙ୍ଗନେ
ସବୁରୂପେ ମନୋରମ, ହେ ମଧୁପ ।୩।
ବାନ୍ଧବୀ ଯେ ବାନ୍ଧି ରଖିଥାଇ ଚନ୍ଦ୍ର ଚନ୍ଦନ ବସନ ପଣତେ
ତାହା ବୋଲିଦେଇ ଆପେ ରତାନ୍ତେ
ଫୁଲ ବ୍ୟଜନ ଧରି ଧୀରେ ବିଞ୍ଚଇ
ମୂର୍ଚ୍ଛିବ ପୁଣି କେମନ୍ତେ, ହେ ମଧୁପ ।
ପ୍ରାତଃକାଳେ ବୁଜିଥାଇ ନୟନ
ଆପେ ନିରେଖଇ ମୋର ବଦନ
ଅତି ଯେନାଯେନ ଯେନା ସେ ରମ୍ଭୋରୁ
ଦେବପଟ୍ଟ ବିଲୋକନ, ହେ ମଧୁପ ।୪।
ଦିନେ ମୋର ବାଳୀ କୁସୁମକୁ ତୋଳି ଗୁନ୍ଥୁଥିଲା ହାର ସଦନେ
ମୁଁ ଯେ ପ୍ରବେଶ ହୋଇଲି ସେ ସ୍ଥାନେ
ବୋଇଲା ଏହାର ରତି ସୁଖସାର
ନାହିଁ କଲା ଚନ୍ଦ୍ରାନନେ, ହେ ମଧୁପ ।
ଜଗି ବେଶ ମନ୍ଦିର ସନ୍ନିଧାନେ
ଗବାକ୍ଷରେ ଯେ ଅନାଇଲା ଦିନେ
ନୋହିବ କାହିଁକି ବୋଲି ଏତେ ଗତି
ରଚିଲା ମୋ ସୁଖଦାନେ, ହେ ମଧୁପ ।୫।

ଆହୁରି ଦିନେ ସେ ପଢ଼ାଉଥିଲି ଶୁକ ଶୁକଳଜିତ ଗଉଷ
ରସ ଶ୍ଲୋକମାନଙ୍କୁ ଅର୍ଥ କରି
ଲୁଚି ଅନ୍ତରେ ମୁଁ ଥାଇ ଶୁଣୁଥିଲି
କେଉଁ ପିକ ତାକୁ ସରି, ହେ ମଧୁପ ।
ଏକ ସଜନୀ ମୋତେ ଦେଖିଥିଲି
ତାହା ଇଙ୍ଗିତରୁ ପ୍ରିୟା ଜାଣିଲି
ପଢ଼ାଇବ ପଦେ ନିକ ଭଲ ଶୁକ
ମୁଖେ ଦିମ୍ବଫଳ ଦେଲି, ହେ ମଧୁପ ।୭।

ଦିନେ ଯେ ସୁନ୍ଦରୀ ନେତ୍ର ଚୁମ୍ବନେ ମୋ ଓଷ୍ଠେ ଲାଗିଥିଲା ଅଞ୍ଜନ
ଜାଣି ନଥିଲି ପ୍ରାତୁ ଆରଦିନ
ସଖୀସଙ୍ଗେ ଥାଇ ନିଜ ଓଷ୍ଠ ପୋଛୁ
ଠାରିଲି ଜୀବନଧନ, ହେ ମଧୁପ ।
ଜାଣି ପୋଛୁଲି ଅନାଇ ହସିଲି
ହୋଇ ମନ୍ଦରେ ଯାଇଁ ସେ ପଶିଲି
ସେ ଭାବ ସେ ଶୋଭା ମନୁ ଛୁଡ଼ୁନାହିଁ
ଢଳୁଲି ପ୍ରାଣେ ଦଶିଲା, ହେ ମଧୁପ ।୭।

ଗଳାମାଳାରେ ବସନ ଛନ୍ଦ କୁଙ୍କୁମ ଘେନୁଥିଲି ବାଳା ଦିନେ
ଧୈର୍ଯ୍ୟେ ପ୍ରବେଶ ହୋଇଲି ସେ ସ୍ଥାନେ
ମୋତେ ଚାହିଁ ଲାଜପାଇ ବାସ ଦେଇ
ଡରେ ଉଠିଲି ବଦନେ, ହେ ମଧୁପ ।

---

୭ । ଶୁକଳଜିତ—ଶୁକ୍ଳତାକୁ ଜିଣିଛି ଯେ ( ପାଠାନ୍ତରେ ଶୁକ ଲଜ୍ଜିତ ଅର୍ଥାତ୍ ଶୁକ ଲଜ୍ଜିତ ଯାହାଠାରୁ ) ।

ମୋର ଆଡ଼କୁ ପିଠି କରି ବାଳା
ମୁଖପୋଛି କଠାଣିରେ ରହିଲା
ନୟନ ଲଗିଲୁ ଅମର ମୋହିନୀ
ଜାଣିଲି ଯାଅ ବୋଇଲା, ହେ ମଧୁପ ।୮।
ଦିନେ ଯେ ସଜନୀ ଚିବୁକେ ତର୍ଜନୀ ଦେଇ ମୋ ଆଗେ ଉଭା ହୋଇ
ଏହି ବାଣୀ କହିଲା କି ଚତୋଇ
ପତିରେ ଯୁବତୀ ଯେ ମାନ କରନ୍ତି
କାମ ଥାଇ ଥାଉଁ ଗାଇଁ, ହେ ମଧୁପ ।
ଆଜି ଅପରୂପ ଅଛି କଥାଏ
ବିଚ୍ଛେଦରେ ଧରନ୍ତି ପୁଣି କାୟେ
ନେତ୍ର ପଲକ ଯେ ସହି ନ ପାରଇ
କହ ଅଛି କି ଉପାୟେ, ହେ ମଧୁପ ।୯।
ଏ ବିଧିରେ ମୋତେ ସୁଖ ଦେଲା ଯେତେ ଏବେ ସୁମରିବାକୁ ହେଲା
ଏହା ବିଧାତା କାହିଁ ବହିଥିଲା
ଆନ ଲୋଡ଼ା ନାହିଁ ଗାବେ ଏକାଥାଇ
ମୋ ଭେଟ ଯାଏ ଅବଳା, ହେ ମଧୁପ ।
କୋଟି ଜନ୍ମରେ ଈଶ୍ୱର ମନାଇଁ
କେତେ ତପସ୍ୟା କରିଥିଲି ମୁହିଁ
ରଙ୍କ ରତନ ହରାଇଲା ପରାୟେ
ହୋଇଲା ପରାଣସହି, ହେ ମଧୁପ ।୧୦।
ଫାଟି ଯା ଫାଟି ଯା ବୋଇଲେ ନ ଯାଇ ହେଲା କି ହୃଦୟ ପାଷାଣ
ଯାହାଁପାଇଁ ରହିଅଛି ପରାଣ
ଦଇବେ ଭେଟ ହୋଇଲେ ଦୟାନିଧି
ପାଞ୍ଚକ ଏହି ଦାରୁଣ, ହେ ମଧୁପ ।

ଜୀବ ଗଲେହ ତାକୁ ନ ପାଇବ
ମୋର ଦୁଃଖ କାହାକୁ ଜଣାଇବ
ଜୀବନ୍ତ ପଣ୍ୟେ ବଣେ ପଡ଼ିଅଛୁ
କହ କେମନ୍ତ କରିବ, ହେ ମଧୁପ ।୧୧।
ମନର ଯୁବତୀ ବିଚ୍ଛେଦ ହେବାରୁ ଆଜ ବିପଦ ଅଛୁ କାହିଁ
ପ୍ରୀତିଠାରୁ ପରମ ସୁଖ ନାହିଁ
ଯୁବା ବୟସରେ ଏକା ନିଶି ନେବା
କାହିଁକି ବିହିଲା ବିହି, ହେ ମଧୂପ ।
କାମ କାଣ୍ଡ ହୋଇ ପୁଣି କଥାଏ
ଏଥି ବଡ଼ ହୋଇନାହିଁ ବ୍ୟଥାଏ
ନବ ଯୁବତୀ ରତି ସବୁ ସମ୍ପତ୍ତି
ଆଜ ଯେ ସୁଖ ବୃଥାଏ, ହେ ମଧୂପ ।୧୨।
ଦୁଇ ଏକ ଦିନ ବିଧାତା ବିଧାନ ତହିଁ ହୁଏ କେତେ ବ୍ୟଥିତ
ତାହା କାହାବେଳେ ହୁଏ କଥିତ
ଚିତ୍ତେ ଘେନୁଥାଇ ନିରିହ ରସକୁ
ଦୋଷ ହେବା ଅନୁଚିତ, ହେ ମଧୂପ ।
ଏବେ ସେହି ଦେହ ଏହା ସହିଲା
ସେହି ବନ୍ଧୁ କେତେଦୂରେ ରହିଲା
ମଲା ମଲା ଅତି ସୁକୁମାରୀ ରାଜ-
କୁମାରୀ ଦୁଃଖ ପାଇଲା, ହେ ମଧୂପ ।୧୩।
ନିଶି ଦିବସେ ମହାଚିନ୍ତା ହୋଇଛୁ ଏହି କଥାକୁ ଏକା ମୋର
ସେହି ଯାହା ବୋଲନ୍ତି ସୁକୁମାର
ଦୁଃଖ କିସ ସେ ସ୍ୱପନେ ଦେଖି ନାହିଁ
ଆଜନ୍ମ ସୁଖୀଙ୍କ ସାର, ହେ ମଧୂପ ।

ଗାଢ଼ ଆଲିଙ୍ଗନ ସନ୍ଧି ନପାରେ
କେତେ ଚମକେ ନଖ ଲାଗିବାରେ
ଜଳଧର ଫୁଲକାଣ୍ଡ କାଣ୍ଡ ସମ୍ଭବ
ଏବେ ସେ କେଉଁ ପ୍ରକାରେ, ହେ ମଧୁପ ।୧୪।

ବରଷା ବରଷରେ ବନେ ଯେ ବଳମ୍ବ, ହୋଇଲା କ୍ଷଣକ ମୋହର
ଭାବବର୍ଷା ଦରଶନେ ଆତୁର
କାଗଜେ ବସି ଲେଖିଥିଲା ମୋ ରୂପ
ଯାହିଁ ମିଳିଲା ପଛର, ହେ ମଧୁପ ।
ପ୍ରିୟେ ! କି କରୁଛ ବୋଲି ବୋଇଲା
ମୁଁ ଯେ ପଛୁଁ କୋଳ କରି ଧଇଲା ।
ସେ ଦିନୁ ଅବଧି ବାସେ ବାସ ଛଳ
ନିମିଷେ ଭିନ୍ନ ନୋହିଲା ହେ ମଧୁପ ।୧୫।

ସେ ପୁଣ ଯେମନ୍ତ ସେବକ ବତ୍ସଳା ମୁଁ ତାର ତେମନ୍ତ ସେବକ
ସେ ମୋ ଭାଲଚନ୍ଦ ମୁଁ ତା ଯାବକ
ମନ ଜାଣିବାକୁ ତାହା ପର କରି
ଦେଖିବା ନାହିଁ ତ୍ରିଲୋକ, ହେ ମଧୁପ ।
କୃଶ କୃତାର୍ଥ ଏବେ ହୋଇଥିବ
ଯେଣୁ ଅଣୁମଧ୍ୟା ତନୁ ଛୁଇଁବ
ଶତପତ୍ର ପତ୍ର ନେତ୍ରା ପତ୍ର ସେ ଯେ
ବିଧାତା କଲା ଶୋଇବ, ହେ ମଧୁପ ।୧୬।

---

୧୬ । ଅଣୁମଧ୍ୟା—ମଧ୍ୟ ଯେ କଟିଦେଶ ଯାହାର ଅଣୁପରି କ୍ଷୀଣ ।
ଶତପତ୍ର—ପଦ୍ମପୁଷ୍ପ ( କମଳଂ ଶତପତ୍ରମ୍ ଇତ୍ୟମରଃ ) ।

ଲୁବ୍ଧ ପୂରିଥିବ ଲାବଣ୍ୟ ଲୋଚନେ ମୋହ ଛୁରିପାଇଁ ତାହାର
ପୂରିଥିବ ନଖଗାରେ ଅଗାର
ଅଳକା ବଳ ମୁଖକୁ ଗ୍ରାସିବଣି
ତନୁ ହେବଣି ପାଣ୍ଡୁର, ହେ ମଧୁପ ।
ଏ ରୂପରେ କରି କରି ଭାବନା
ନୃପ ନନ୍ଦନ ଲଭିଲା ବେଦନା
ରାମ ଧ୍ୟାୟି ସପ୍ତଦଶ ପଦେ ଛନ୍ଦ
ଉପଇନ୍ଦ୍ର ବିରଚନା, ହେ ମଧୁପ ।୧୭।

---

## ଷଷ୍ଠ ଛାନ୍ଦ

ରାଗ—ବରାଡ଼, ଆଷାଢ଼ ଶୁକ୍ଳ

ନୃପ ନନ୍ଦନା ବିରହେ କାତର
ତରଳ ନୟନେ ପୂରିତ ନୀର
ନିରନ୍ତରେ ଦେଇ କପୋଳେ କର
କରଇ କାନ୍ତ ଚିନ୍ତନା ହୃଦର
ଦରହାସି ବାଳା
ବାଳାରୁଣ ଧରି କି ଗୁରୁ ମାଳା ।୧। (ଶୃଙ୍ଖଳା)

ଦେଖି ସଖିଏ ବିରହେ ବିସ୍ମୟର
କରନ୍ତି ତହିଁ ଶୀତ ଉପଚାର
ବୋଲନ୍ତି ତହିଁ ମଧୁର ଉତ୍ତର
କାନ୍ତ ପାଶକୁ ଗୋ ପେଷିବା ଚାର
ଧୈର୍ଯ୍ୟକୁ ଆଚର
ଅଦମ୍ଭ ହେବା ଅନର୍ଥ ପ୍ରଚୁର ।୨।

ଖଡ଼ ପାଡ଼ ବସେ କେଉଁ ସଜନୀ
ବଞ୍ଚିବ କି ସମା ଆଜ ରଜନୀ
ଶିବ ଶିବ କେହୁ ବଦନେ ଘୋଷେ
କେ ତହିଁ ତୁଳା ଦିଏ ନେଇ ନାସେ
ଦୁଃସହ ବେଦନା
ଦିନୁ ଦିନୁ ଲଭେ ଚନ୍ଦ୍ରବଦନା ।୩।

ସଜନୀମାନେ ଅତ୍ୟନ୍ତ ବିବେକୀ
ଅତି ଯତନ କରନ୍ତି ତହିଁକି
କେ ଅବା ଦେଖାଇ ଦିଏ ତପନ
ଶଶୀ ଦେଖିବାକୁ ଯହିଁ ସ୍ୱପନ
ବାତାୟନ ସ୍ଥାନ
ମଧ୍ୟରେ ପୁଣି ବାସ ବାଡ଼ମାନ ।୪।

ଚତୁରମାନଙ୍କେ ଜାଲ ବନ୍ଧାଇ
ବିହଙ୍ଗ ପ୍ରଚୁର ନୋହିବା ପାଇଁ

---

୨ । ଅଦମ୍ଭ—ବମ୍ଭହୀନ ।

ହଂସ ମୟୂର ଡାହୁକ କୋକିଳ
ବଧକୁ ପେଷିଲେ ବ୍ୟାଧ-ସଙ୍କୁଳ
ପୁଷ୍ପ ଲତାମାନ
ଭୃଙ୍ଗ ଧ୍ୱନି ଦ୍ୱାରେ କଲେ ଛେଦନ ।୫।
ଚଣ୍ଡୀ ବରଣ ଦ୍ୱିଜଙ୍କୁ ଡକାଇ
ଲଡ଼ୁ ଚମ୍ପା ଶିବଗଣେଣେ ଦେଇ
ପୂଜା କରାଇଲେ ଦୁର୍ଗାମାଧବ
ସଖି ଜାବେ ଆଜ ଆସିବେ ଶିବ
ଅନ୍ତର୍ଦ୍ଧାଁ ପତନ
କରନ୍ତ ଜେମାକୁ ସେ ଅଚଳନ୍ଦ ।୬।
ବ୍ୟଜନ ବଞ୍ଚ ସେ ଢ଼ଶୀର ବାଟି
ଦଅନ୍ତ ସଜମା ଅଙ୍ଗରେ ଘୋଟି
କୋମଳ ପଲ୍ଲବ ଶେଯେ ଶୁଆଇ
ଚନ୍ଦନ ଲେପନ୍ତ ଚନ୍ଦ୍ର ମିଶାଇ
ମୋହ ହେବା ବେଳେ
କହନ୍ତ କାନ୍ତ କଥା କର୍ଣ୍ଣମୂଳେ ।୭।
ଏ ରୂପେ କରନ୍ତ ମୋହ ବଞ୍ଚନା
କାନ୍ତ ରୂପ ପଟ୍ଟେ କର ରଚନା
ମୃଣାଳ ମାଳରେ ନାମ ଜପାଇ
ହୃଦୟ ଉପରେ ସମା ପକାଇ
କଲ୍ପ ଭାବମାନ
ଚଟୋଇ ଚଟୋଇ କରେ ଚନ୍ଦନ ।୮।

---

୭ । ବ୍ୟଜନ—ବଞ୍ଚଣା । ଢ଼ଶୀର—ବେଣାଚେର ।
୮ । ଗଲ୍ପ ଭାବମାନ—ପାଠାନ୍ତର ।

ହେମାଙ୍ଗୀ ଯାହା କାମିନୀଙ୍କ କହି
ଏବେକେ ପ୍ରଶ୍ନ ହୁଅଇ ତହିଁ
ଉଜ୍ଜ୍ୱଳ ଜଳ ରଞ୍ଜନରେ ମିଶି
ଗଣ୍ଡେ ବିଶ୍ରାମ ଯେ କରଇ ଆସି
ପୋଛି ଦେଇ ବାସେ
ଉଜ୍ଜ୍ୱଳ ଏକା ଅଛି ସେହି ଦେଶେ ।୯।

ଭ୍ରୁଟି ନାହିଁ ଏକା ହିବଳ ସାର
ହାଣ ଅଛି ଏକା ଉରଜ ପର
ଚଞ୍ଚଳ ଏକା ଅଛି ମାନସରେ
ମନଅଛି ଏକା ପ୍ରିୟା ପାଶରେ
ସବୁ ଅନୁଭୂତ
ଗ୍ରାମି ଅଛି ଏକା ମଦନ ଭୂତ ।୧୦।

ଜୀବଠାରେ ଏକା ଅଛି ଧିକ୍କାର
ଅଶନ ବେଶରେ ନାହିଁ ଆଦର
ବିରହ ନଦ୍ୟା ହୋଇଅଛି ଯହିଁ
କି ଲଭ ତହିଁରେ ଅଧୀନା କହି
ଆଜ କାଲ ପର
ଜୀବ ତେଜିବ ଅତି ସୁକୁମାରୀ ।୧୧।

ଏ ମୁଖୁଁ ସେ ମୁଖୁଁ ଏ ବାଣୀ ହେଲା
ମହୀପତିଙ୍କ ଛାମୁ ଯାଏ ଗଲା

---

୧୦ । ଉରଜ—ସ୍ତନ, ପର—ଅତ୍ୟନ୍ତ ।

୧୧ । ଅଶନ—ଖାଇବା ।

ଶୁଣି ସେ ଅତି ବ୍ୟାକୁଳ ହୋଇଲେ
ଦଇବ ବଶେ ମୁନିଏ ମିଳିଲେ
ଦେଖି ମହାରାଜା
ପ୍ରଣିପତ୍ୟ କରି ଆସନ ତେଜ୍ୟା ।୧୨।

ମୁନି ପଚାରିଲେ ତାହାଁ ଏସନ
ପୁତ୍ର ରାଜା ଅନ୍ତଃପୁର ସ୍ଥାପନ
ବନ୍ଧୁବର୍ଗ ଆଦି ସର୍ବ କୁଶଳ
ଶୁଣି ନରପତି କହେ ତତ୍କାଳ
କଲ୍ୟାଣରୁ ତବ
ସର୍ବ କୁଶଳ ମୋହର ହେ ଦେବ ।୧୩।

ମୃଗୟା ବନୋଦେ ଯାଇ କୁମର
କାହିଁ ରହିଲା ନୋହିଲା ଗୋଚର
ନନ୍ଦନ ବୋଲିବାକୁ ମୋର ସେହି
ଏଥୁଁ ବିପତ୍ତି ମହାମୁନି କାହିଁ
ଧ୍ୟାନେ ସେ ଭୂସୁର
ଜାଣିଲେ ରହିଛି ଅସୁର ପୁର ।୧୪।

କହିଲେ ଆଜ ରଜନୀ ପ୍ରଭାତେ
ତୋର ପୁତ୍ର ଆଣି ଦେବା ପୁରତେ
ଏହି ସମୟରେ ରଜନୀ ହୋଇ
କୁମର ଶୟନ ସ୍ଥାନକୁ ଯାଇ
ପ୍ରବେଶି ସେଠାରେ
ହରିଲା ଯୋଗେନ୍ଦ୍ର ଯୋଗ ବଳରେ ।୧୫।

---

୧୪ । ଭୂସୁର—ବ୍ରାହ୍ମଣ ।

ପ୍ରଭାତେ ତାତ ପାଶେ ସମର୍ପିଲ
ଦେଖି ମହୀପତି ଆନନ୍ଦ ହେଲ
ନନ୍ଦନ ତାତ ପାଦେ ପ୍ରଣିପତ୍ୟ
ନଗରଜନ ଶୁଣି ହେଲେ ହର୍ଷିତ
ତହୁଁ ତତପରେ
ପ୍ରବେଶ ଯାଇଁ ସୁନ୍ଦରୀ ମନ୍ଦିରେ ।୧୭।

ବାଳା ବିରହ ଅବସ୍ଥା ଜାଣିଇଁ
ଦୁଃଖିତ ହୋଇଲ କୁମାର ତହିଁ
ସୀତା ରାମ ପଦ୍ମଚରଣ ଗୁଣି
ଉପଇନ୍ଦ୍ର ମଙ୍ଗରାଜ ଏ ଭଣି
ସପ୍ତଦଶ ଛାନ୍ଦ
ଏ ଛାନ୍ଦ ବୋଧ କରିବ କୋବିଦ ।୧୭।



# ସପ୍ତମ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

( ଏ ଛାନ୍ଦ ଶୃଙ୍ଖଳା )

କହଇ କୁମାର ଏମନ୍ତ ଅବସ୍ଥା କାହିଁପାଇଁ ପ୍ରାଣବନ୍ଧୁ ।
ବନ୍ଧୁଙ୍କ ଅଧର୍ମ ନୋହିଲେ କାହିଁକି ବୋଲଉ କରୁଣାସିନ୍ଧୁ ।୧।
ସିନ୍ଧୁର ଗମନା କେଉଁ କୃଷ୍ଣ ତୋର ହୋଇଅଛି କଳେବର ।
ବର ବରମା ଭୃଙ୍ଗୋତ୍ତର ପାଇଁକି ତେଜିଲୁ ବେଶ ଆହାର ।୨।
ହାର ବହିବାକୁ ବଳ ନାହିଁ ତୋର ହା ହା ପରମ ସୁନ୍ଦରୀ ।
ଦଳଦ୍ରନଧି ମୋ ଅନୁରାଗ ଲାଗି ହୋଇଲୁ ତୁ ଏତେସର ।୩।
ଶରୀର କେତକୀ ଚମ୍ପାରୁ ଉଜ୍ଜ୍ୱଳ ସେ ତ କେତକୀ ସମାନ ।
ମାନସ ମୋହିନୀ ଅତି କଷ୍ଟ କଷ୍ଟେ ରଖିଲୁ ପରା ଜୀବନ ।୪।
ବନଜମୁଖୀ କି ନୀରସ ଦିଶୁଛି ଯଥା ଦିବା ସୁଧାକର ।
କରକଦନ୍ତୀ ଘେନନାହୁଁ କାହିଁକି ନୟନେ ଅଞ୍ଜନ ସାର ।୫।
ସାରସ ଚରଣା କି କରି କରି ତୁ ବନ୍ଧ୍ୟ ଝଟକ ଲୋଚନ ।
କନକ ବରନା କର୍ଣ୍ଣ ବୁଜୁ ପରା ଗର୍ଜିଲା ବେଳକୁ ଘନ ।୬।

---

୨ । ସିନ୍ଧୁର—ଗଜ ।

୫ । କରକଦନ୍ତୀ—ଡାଳିମ୍ବ ମଞ୍ଜିପରି ଦାନ୍ତ ଯାହାର ।

୬ । ସାରସଚରଣା—ପଦ୍ମପରି କୋମଳ ଚରଣ ଯାହାର ।
(ପାଠାନ୍ତରେ—ସାରସଗମନା ଅର୍ଥାତ୍ ହଂସପରି ଗମନ ଯାହାର)

ଘନ ଘନ ଏକାବେଳେ ଡାକୁଥିବେ ଯେତେବେଳେଟି ଦର୍ଦ୍ଦୁର ।
ଦୂର ଚେତନା ହେଉଥିବ ତୋହର ଏମନ୍ତ ହୁଏ ମନର ।୭।

ନରଚନ୍ଦ୍ର ସୁତା ନିଦ୍ରା ନ ଆସଇ ପରି ତୋତେ ରଜନୀରେ ।
ନୀରେ ପୂରଇ ପରି ପଦ୍ମନୟନୀ ଅବନୀ ଚାରୁ ନଖରେ ।୮।

ଖରେ ନିଃଶ୍ୱାସ ଛାଡ଼ୁ ପରି ପଢ଼ିଲେ ମୋର ପ୍ରସଙ୍ଗ ଚିତ୍ତର ।
ତରଳ ହୃଦୟା ହେଉ ପରି ଦେଖି ଫୁଲ୍ଲ ସୁମନା ନିକର ।୯।

କରି ଭଉଁରୀ ଉନ୍ମଦ ହେଉଥିଲେ ପରି ଯେ ଡାହୁକା ବଳୀ ।
ବଳୀ ଶୋଭିନୀ ହେଉଥିଲା ଏ ମହୀ ତୋହର ପଲଙ୍କ ତଳ ।୧୦।

ତଳ ଯାଉଥିଲା ପରି ତୋ ବଚନ କହିବା ବେଳେ ଅବଳା ।
କଳା ବିଭୂଷଣ ନିଗଡ଼ ପରିପ୍ରେ ମଣୁଥିଲୁ ପରି ବାଳା ।୧୧।

ବାଳାରୁଣାଧରୀ ଅନୁଭୂତା ଗୀତ ଶୁଣି ହୋଇଲା ହରଷ ।
ରସବତୀକ କୋଳେ ଧରି ବସିଲା କୁମର ରସେ ଆବେଶ ।୧୨।

ବେଶ କରିସାରି ଆରମ୍ଭ କଲା ସେ ବିବିଧ ପ୍ରକାରେ ରତି ।
ରତିପତି ଲଜ୍ଜା ପାଇ ଅପସରେ ସନ୍ତୋଷ ହେଲେ ଦମ୍ପତି ।୧୩।

ପତି ସେ ଉତ୍ତରୁ ପାଇଥିଲା ଦୁଃଖ କହିଲା ପ୍ରିୟା ଛାମୁର ।
ମୁରପରବସ୍ତୁଁ କୋଳେ ବସାଇଲା ପୁଣିରେ ନାଗରୀବର ।୧୪।

ବର ନିତମ୍ବିନୀ ଜୀବ ଥିବାଯାକେ ନୋହିବ ଲବେ ଅନ୍ତର ।
ତରଳ ନୟନା ନିୟମ କରିବ ଛୁଇଁ ମୂର୍ଦ୍ଧ୍ନି ଗଙ୍ଗାଧର ।୧୫।

---

୭ । ଦର୍ଦ୍ଦୁର — ବେଙ୍ଗ ।
୧୩ । ରତିପତି—କନ୍ଦର୍ପ, ଅପସରେ —ଚାଲିଯାଏ ।
୧୪ । ମୁରପର—ମୁରାରି ଯେ ବସ୍ତୁ ।
୧୫ । ଲବେ—ଟିକିଏ, ତରଳ—ଚଞ୍ଚଳ ।

ଧରଣୀମଣ୍ଡନା ପୁରୁଷ ଏ ରୂପେ ନେଲେ ବହୁକାଳ ଦିନ ।
ଦିନମଣି ଚନ୍ଦ୍ର ଉଦେ ନ ଜାଣିଲେ ରହିଲେ କେଳି ଭବନ ।୧୬।
ବଦନ ସୁନ୍ଦର ଧନୁଶରଧର ରାବଣ ବଂଶ ନାଶନ ।
ସନକାଦି ମୁନିମାନେ ଯା ଚରଣ କରନ୍ତି ନିତି ଧିଆନ ।୧୭।
ଆନନ୍ଦ ଚିତ୍ତେ ତାହାଙ୍କ ପଦ ଗୁଣି ତରିବା ବିଶ୍ୱ ପ୍ରପଞ୍ଚ ।
ପଞ୍ଚ ବେନ ଛନ୍ଦେ ଉପଇନ୍ଦ୍ର କହେ ଏ ଗୀତ ଅତି ସୁସଞ୍ଚ ।୧୮।

---

ସ ମା ପ୍ତ

---

ମୁଦ୍ରାକର—ଶ୍ରୀ ଲକ୍ଷ୍ମୀଧର ଦାସ୍
ଦୁର୍ଗା ପ୍ରେସ, ଖଟବିନ୍ ସାହି, କଟକ-୧